# ଅଧ୍ୟାତ୍ମ୍ୟ ସାହିତ୍ୟ ।



ପ୍ରଥମ ଖଣ୍ଡ ।

ଶ୍ରୀଯୁକ୍ତ ବାବା ଶ୍ରୀ ବଦ୍ଧାଗ୍ରି ଦାସ ମହନ୍ତ-
ଗୋ[illegible]ଳଜି ମଠଙ୍କଦ୍ୱାରା [illegible]

ପ୍ରଥମ ବାର

ମୁଦ୍ରାଙ୍କିତ6K;          mpan

CUTTACK,
Printed by the Cuttack Printing Company
Limited.
1907.

ମୂଲ୍ୟ ୫ •—॥/ ଉଜଅଣା
Rs 10/-

# ବିଜ୍ଞାପନ ।



ହେ । ବଙ୍ଗ ସଭ୍ୟମଣ୍ଡଳୀ ସମାଜ ଗଣ ମୋର ନିର୍ବୋଧାସ୍ଥାରେ ଯାହା କିଛି ଘଟିଲା ତାହା ଏହି ପୁସ୍ତକରେ ଜଣାଉଅଛୁ, ଆପଣମାନେ ଅନୁଗ୍ରହ କରି ଦେଖିବା ହେଉନ୍ତୁ କିମ୍ବା କୌଣସି ପୁସ୍ତକ ଦେଖି ଅନୁବାଦ ଲେଖା ହୋଇଅଛି, ଦୃଷ୍ଟାନ୍ତ ସ୍ୱଭାବରେ ଯାହା ଦୃଷ୍ଟ ହେଲା ତାହା ଲେଖି ଦେଇଅଛୁ ଯେଉଁ ଯୋଗୁ ଲେଖିବାରେ କୌଣସି ଦୁର୍ଗୁଣ ବା ଅନାବଶ୍ୟକତା ଥାଏ ତାହାହେଲେ ଆପଣମାନେ ମାର୍ଜ୍ଜନା କରି ମୋ ହତଭାଗ୍ୟ ସଦୁପଦେଶ ଦାନ କଲେ ତାହା ମୁଁ ଶିରୋଧାର୍ଯ୍ୟ କରି ପାରିବ ବନ୍ଧୁଗଣ ଏହି ପ୍ରଥମ ଖଣ୍ଡରେ ଅଳ୍ପାଂଶରେ ଜଣାଉଅଛୁ ଯଦି ଆପଣମାନଙ୍କର କରୁଣା ଥିବ ତେବେ ଦ୍ୱିତୀୟ ଖଣ୍ଡରେ ଆଉ ଯାହା ଦୃଷ୍ଟ ହେବ ତାହା ଜଣାଇବାକୁ ବାଞ୍ଛା ରଖିଅଛୁ ଯଦି ଆପଣମାନଙ୍କର ପ୍ରିୟ ବୋଧ ହୁଏ ତେବେ ମୋର ଲେଖିଥିବା ପଠନ ଶ୍ରବଣ କର ନା ଆଉ ଅପ୍ରିୟ ବୋଧ ହେଲେ ଆପଣମାନେ ମୋ ହତଭାଗ୍ୟ ଦାରୁଣ ହୃଦୟରେ ଯେଉଁ ଲଗୁଡ଼ ପ୍ରହାର କରିବେ ତାହା ମଧ୍ୟ ମୋର ଶିରୋଧାର୍ଯ୍ୟ ମୁଁ ସର୍ବେ ଆପଣଙ୍କର କର୍ଣ୍ଣପ୍ରିୟକର୍ତ୍ତା ମୁଁ ନୁହେ ଅବଶ୍ୟ କର୍ଣ୍ଣକଟୁ ହେବ ଯାହାହେଉ ଆଉ ମୋର ସୂକ୍ଷ୍ମବୁଦ୍ଧିରେ ଯାହା ଘଟିଲା ତାହା ଅବଶ୍ୟ ଆପଣମାନେ ଗ୍ରହଣ କରନ୍ତୁ ବା ନ କରନ୍ତୁ କିନ୍ତୁ ବଚନ ଦୁଃଖ ବା ଅତ୍ର ପରିଚୟ କରିବାର ଲକ୍ଷ କରି ଦେଖିବାର ଯୋଗ୍ୟ ବୁଝି ଗ୍ରହଣ କରିବା ହେଉନ୍ତୁ ।

ଇତି

ଶ୍ରୀ ବହାଦୁର ଦାସ ମହନ୍ତ ସମ୍ବଲପୁର
ଗୋପାଳ ଜଉ ମଠ ବେଙ୍ଗଲ ଓଡ଼ିଶା ଡିଭିଜନ

# ସୂଚିପତ୍ର ।

# ଅଧ୍ୟାତ୍ମ ସାହିତ୍ୟ ।

---

ସ୍ତୁତି ମଙ୍ଗଳ ।

ଜୟ ଗୋପାଳ ଗୋରୂପ ପୃଥ୍ୱୀ ହିତକାରି ।
ଜୟ କୃଷ୍ଣବତ୍ସଳ ହେ ଗୋବନ୍ଦ ମୁରାରି । ୧ ।
ଜୟ ଅଚ୍ୟୁତ କେଶବ ଜୟ ଅଦକନ ।
ଜୟ ନାରାୟଣ ବ୍ରହ୍ମରୂପ ଜୁଦଗ୍ୱନ । ୨ ।
ଜୟ ନୃସିଂହ ମୁରାରି ଶ୍ରୀ ମଧୁସୂଦନ ।
ଜୟ ଗୋପୀଙ୍କ ବଲ୍ଲଭ ଶ୍ରୀ ନନ୍ଦନନ୍ଦନ ହେ । ୩ ।
ଜୟ ହେ ରୁକ୍ମିଣୀକାନ୍ତ ଜୟ ଉପଇନ୍ଦ୍ର ।
ଜୟ ଶ୍ୟାମଲମୂରତି ଶ୍ରୀ ଗୋକୁଳଚନ୍ଦ୍ର ହେ । ୪ ।
ଜୟ କଂସ ନାଶକାରୀ ଜୟ ହେ ମୁରାରି ।
ଜୟ ଶକଟଭଞ୍ଜନ ଗୋପୀ ହୃଦିଚାରୀ ହେ । ୫ ।
ଜୟ କାଳୀଦଳନ ହେ ଜୟ କୃପାସିନ୍ଧୁ ।
ଜୟ ସୁଦାମ ହୃଦୟହିତ ପ୍ରାଣବନ୍ଧୁ ହେ । ୬ ।
ସେ ପ୍ରଭୁଙ୍କୁ କରନ୍ତିରେ କରୁଣ ସ୍ମରଣ ।
ନମଇଁ ପାଦପଦ୍ମରେ ସାଷ୍ଟାଙ୍ଗ ହୋଇଣ ହେ । ୭ ।
ନମଇଁ ବ୍ରହ୍ମାନନ୍ଦନ ମାତଃ ସରସ୍ୱତି ।
ତୋ ପାଦପଦ୍ମରେ ମାଗୋ କରଇଁ ମୁଁ ପ୍ରଣତି ଗୋ । ୮ ।
ପ୍ରଥମେ ଭାରତୀ ନାମ ତ୍ରିପୁରେ ବନ୍ଦଯ୍ତୀ ।
ଦ୍ୱିତୀୟରେ ସରସ୍ୱତୀ ନାମ ତୁ ବୋଲାଉ ଗୋ । ୯ ।

ତୃତୀୟରେ ଶାରଦା ତୁ ନାମ ପ୍ରକାଶିଣ ।
ଚତୁର୍ଥେ ହଂସବାହନୀ ହେଲୁ ମାତ ପୁଣ ଗୋ । ୯ ।
ପଞ୍ଚମେ ଜଗଦ୍‌ବିଖ୍ୟାତା ତ୍ରିପୁର ସ୍ୱାରଣୀ ।
ଷଷ୍ଠେ ବାଗୀଶ୍ୱରୀ ହେଲୁ ମାଗୋ ତୁ ଜନନୀ ଗୋ । ୧୦ ।
ସପ୍ତମରେ କୁଅଁରୀ ପ୍ରୋକ୍ତା ନାମକୁ ପାଇ ।
ଅଷ୍ଟମେ ବରଦାୟିନୀ ତୁ ଗୋ ମହାମାଇ ଗୋ । ୧୧ ।
ନବମରେ ବୁଦ୍ଧିଦାଣୀ ପ୍ରକାଶି ସ୍ୱନାମ ।
ବ୍ରହ୍ମଚାରିଣୀ ଗୋ ମାତଃ ବୋଲାଉ ଦଶମ ଗୋ । ୧୨ ।
ଏକାଦଶେ ଚନ୍ଦ୍ରଘଣ୍ଟା ନାମ ପ୍ରକାଶିଲୁ ।
ଦ୍ୱାଦଶରେ ଭୁବନେଶ୍ୱରୀ ବୋଲାଇଲୁ ଗୋ । ୧୩ ।
ସେ ଦ୍ୱାଦଶନାମରେ ମୁଁ ପଶିଲି ଶରଣ ।
ମଞ୍ଜୁଷକୁ ପୂର୍ଣ୍ଣ କର ରଣ କର ଦାନ ଗୋ । ୧୪ ।
ବ୍ରହ୍ମରୂପିଣୀ ହୋଇଣ କଣ୍ଠେ ଆସି ବସ ।
ମୋ ମନ ଜାଣିଣ ପଦଶବ୍ଦକୁ ପ୍ରକାଶ ଗୋ । ୧୫ ।
ନମଇଁ ଗୁରୁସ୍ୱରୂପ ବ୍ରହ୍ମତେଜ ପୁଞ୍ଜ ।
କରଯୋଡ ଜଣାଉଛୁ ସେବକ ମୋ ଅରଜ ହେ । ୧୬ ।
ଜଣାନାହିଁ ଶୁଭପତ୍ରେ କ ଲେଖିଲେ ଅକ୍ଷର ।
ଅଜସ୍ର ଭ୍ରମୁଛୁ ମନ ନ ପାଇ ତୋ ଶୋକ ହେ । ୧୭ ।
ଜନ୍ମକାଳୁଁ ଘାଣ୍ଟି ହୋଇଗଲି ଏତେଦିନ ।
ଭବଫାଶକୁ ଛିଣ୍ଡ ଯେ ଅପବର୍ଗ ଦାନ ହେ । ୧୮ ।
ନମଇଁ ସନକାଦି ଯେ ମହର୍ଷିଗଣ ।
ନମଇଁ ନାରଦାଦି ଯେ ଆତ୍ମଜ୍ଞାନୀ ପୁଣ ହେ । ୧୯ ।
ହରି ଭକ୍ତ ହର ବଳସିଦ୍ଧ ଭାଙ୍କ ଚିତ୍ତ ।

କରୁ ବିଳାସ ଯେ ସ୍ଥାନ ସେ ସ୍ଥାନରେ ରତ ହେ । ୨୦ ।
ବୃନ୍ଦାବନ କୁଞ୍ଜ ବିଳସିତ ଯେଉଁ ସ୍ଥାନ ।
ମଥୁରା ଯେ ଧର୍ମଶାଳା କ୍ଷେତ୍ର ସେ ଭୁବନ ହେ । ୨୧ ।
ସେ ସ୍ଥାନକୁ ଦଣ୍ଡବତ ସେ କ୍ଷେତ୍ର ମୁରୁକା ।
ନ ପାଇଣ ପାଉଅଛନ୍ତି ଏ ମାୟାର ଦକ ହେ । ୨୨ ।
ନମଇଁ କ୍ଷେତ୍ର ଗୋମତୀ ପବଏକାରକ ।
ନମଇଁ ଯେ ଗୋବର୍ଦ୍ଧନ ସାକ୍ଷାତେ ଗୋଲୋକ ହେ । ୨୩ ।
ନମଇଁ ଯେ ଦ୍ୱାରାବତୀ ମହା ପୁଣ୍ୟସ୍ଥଳ ।
ନମଇଁ ରୁକ୍ମଣୀମାତାଙ୍କ ଯେ ପାଦ ମୂଳ ହେ । ୨୪ ।
ବନ୍ଦି ଗୋପାଳମନ୍ତ୍ରକୁ ହୃଦୟେ ଧରଣ ।
ଯାହାଙ୍କ କରୁଛନ୍ତି ଏହିମାୟା ଏ ଭୁବନ ହେ । ୨୫ ।
ମାଳା ଧାର କର୍ମୋହ ଯେ ଆଖଡ଼ାକୁ ପାଇ ।
ମାୟାରଣ୍ୟେ ଭ୍ରମୁଅଛ ଠାବକୁ ନ ଧ୍ୟାୟି ହେ । ୨୬
ଗଡ଼ ବା ଅଗଡ଼ ହେଉ ନାହିଁ ମୋ ଆୟୁତ୍ତ ।
ନିରନ୍ତରେ ଆଛା ମୋର ଶ୍ରୀ କମଳାକାନ୍ତ ହେ । ୨୭ ।
ନମଇଁ ଯେ ଅଷ୍ଟ ଅଦଯୋଗ ଯେଉଁ ରୂପ ।
ଋଷିଗଣେ ଖଣ୍ଡିଲେ ଯେ ଯୋଗବଳେ ଅପ ହେ । ୨୮ ।
ନାସିକାଦ୍ୱାରେ ସେ ଯୋଗ ହୁଅଇ ଯେ ସାଧ ।
ନାସିକାଦ୍ୱାର ବୋଲିଣ ହୃଦେ କର ବୋଧ ହେ । ୨୯ ।
ନମଇଁ ଯେ ଦୁର୍ବାସାଙ୍କ ଶ୍ରୀ ପାଦପଦ୍ମରେ ।
ମହା ସିଦ୍ଧବୃତ୍ତି ସେ ଯେ ନିମ୍ବାର୍କ ବଂଶରେ ହେ । ୩୦ ।
ସାଷ୍ଟାଙ୍ଗରେ ଦଣ୍ଡ ପ୍ରଣିପାତ ହୋଇକରି ।
ନିମ୍ବାର୍କ ସ୍ୱାମିଙ୍କ ପାଦପଦ୍ମକୁ ସୁମର ହେ । ୩୧ ।

ଯେ ପୁରୁଷ ନିମ୍ବାର୍କ ପାନେ ହୋଇ ତୋଷ ।
ସାରୂପ୍ୟ ଭକ୍ତିରେ ମୁକ୍ତିଦ୍ୱାରକୁ ପ୍ରକାଶ ହେ । ୩୨ ।
ସେ ମୁକ୍ତିପଥର ପ୍ରକାଶିଲେ ଏ ସଂସାରେ ।
ନିମ୍ବାର୍କ ସମ୍ପ୍ରଦା ତହୁଁ ହେଲା ଯେ ପ୍ରଗଟ ହେ । ୩୩ ।
ତହୁଁ ଦ୍ୱାଦଶ ଅଗୃର୍ଯ୍ୟ ହୋଇଲେ ବିଖ୍ୟାତ ।
ଅଗୃର୍ଯ୍ୟମାନଙ୍କୁ ସାଷ୍ଟାଙ୍ଗରେ ପ୍ରଣିପାତ । ୩୪ ।
ତହୁଁ ବାଦଶଭକ୍ତ ଯେ ହୋଇଲେ ବିଦିତ ।
ତାଙ୍କ ପାଦପଦ୍ମ ଭଜୁଥାଇଁ ମୁଁ ନିରତ ହେ । ୩୫ ।
ଭ୍ରମି ଥାଇଁ ମାୟାଚରଣେ ନ ପାରଇଁ ହେଳ ।
ମାୟାରେ ମଜ ଜଉତିଲ ଜୀବ ଜେନେ ବୁଡ଼ି ହେ । ୩୬ ।
ତାଙ୍କ ବଷାବଳୀଂସରେ ଶୁଭ ଗ୍ରାମ ଖ୍ୟାତ ।
ସେହୁ ବୈଷ୍ଣବ ବଂଶର ଅଟେ ମୁଁ ଅଙ୍ଗିତ ହେ । ୩୭ ।
ନିମ୍ବାର୍କ ଗୁରୁ ବଂଶୀୟ ଯେତେକ ପ୍ରସିଦ୍ଧ ।
ଦଣ୍ଡବତ କରୁଅଛୁ ଖଣ୍ଡ ମୋର ଖେଦ ହେ । ୩୮ ।
ଆଉ ନିମ୍ବାର୍କ ବଂଶ ଯେତେକ ଏ ସଂସାରେ ।
ସମସ୍ତଙ୍କୁ କରଯୋଡ଼ି ଦଣ୍ଡବତ କରେଁ ହେ । ୩୯ ।
ନମଇଁ ଅନନ୍ୟ ସମ୍ପ୍ରଦା ବୈଷ୍ଣବ ବୃନ୍ଦକୁ ।
ନମଇଁ ଯେ ସଙ୍ଗ ଧର୍ମ ସିଦ୍ଧ ପୁରୁଷଙ୍କୁ ହେ । ୪୦ ।
ନମଇଁ ହଂସାବତାର ପ୍ରଭୁ ନାରାୟଣ ।
ନମଇଁ ଯେ ସର୍ବେଶ୍ୱର ମୁକ୍ତିଦାତା ପଣ । ୪୧ ।
ନମଇଁ ସନକା ସୁତ ପ୍ରଭୁଙ୍କ ଭକତ ।
ନମଇଁ ଅଞ୍ଜନାସୁତ ମହାପୁଣ୍ୟବନ୍ତ ହେ । ୪୨ ।
ନମଇଁ ବ୍ୟାସ ବାଲ୍ମିକ ଭବ ମଧ୍ୟେ ଭଜ ।

ଜନ୍ମଇଁ ଯେ ଜମ୍ଯୁଦେବ ଜଗନ୍ନାଥ ଦାରୁ ଜ ହେ । ୪୩ ।
ଜନ୍ମଇଁ ତୁଳସୀ ଦାସ ବାବା ବଡ ଭକ୍ତ ।
ସମଚରଣରେ ଶୀରନ୍ତ୍ରର ଅନୁରକ୍ତ ହେ । ୪୪ ।
ଜନ୍ମଇଁ ଯେ ଭାନୁ ଶଶୀ ଧର୍ମ ଧୁରନ୍ଧର ।
ଧର୍ମ। ଧର୍ମ ବର୍ତ୍ତରେ ବୁଲନ୍ତି ସଂସାର ହେ । ୪୫ ।
ବନ ଅବନୀ ପବନ ପୁର୍ଯ୍ୟପୁର ଯେତେ ।
ଶ୍ରବଣ ପଶୁଛି ରଷାନ୍ନର ହୋ ସନ୍ତତେ ହେ । ୪୬ ।
ଧାନ ହୋଇ କର କ୍ରମେ ଏ ଦୁର୍ଜଣ ବଣ ।
ପାନାର୍ତ୍ତ ସ୍ୱରରେ ମୁଁ ଯେ କରୁଛି ଜଣାଣ ହେ । ୪୭ ।
ଦୀନବନ୍ଧୁ ପାଦପଦ୍ମ ଆଶ୍ରିତ ହୋଇଣ ।
ଦବାଲଣୀ ଜାତୁ ଅଛୁ ମାୟାରେ ଜଡଣ ହେ । ୪୮ ।
ଭବ ଭୟ ପାଇ ଭବକ ଉଠଇ ମନ ।
ଭବ ମାୟା ତରଙ୍ଗରେ ନ ପାଉଛି ତ୍ରାଣ । ୪୯ ।
ମାୟାମୋହ ମଦସ୍ତ ପାନରେ ମତ୍ତ ହୋଇ ।
ମାୟାଶ୍ରିବେ ପଡ ଭାବେଁ ନ ମିଳଇ କୂଳ । ୫୦ ।
ଦଦଶ ନାବ ଖଣ୍ଡିକ ଭାସି ଅଜାୟତ୍ତ ।
ଦମ୍ଭ ଧର ଗୃହ୍ଣି ଅଛି ଶ୍ରୀହର ଅଭୂତ । ୫୧ ।
ନାରାୟଣ ପ୍ରଭୁ ପ୍ରଭୁ ଯାଜ୍ ମୋ ଜୀବନ ।
ରଖନ୍ତୁ ବା ନ ରଖନ୍ତୁ ନାହିଁ ମୋର ଅନ ହେ । ୫୨ ।
ବୁଧଜନେ ଜଣାଉଛି ତୁମ୍ଭର ଅଗ୍ରତ ।
ବାୟା ହୋଇ ଭ୍ରମୁ ଅଛି ମୁହିଁ ଯେ ଅସ୍ଥିର । ୫୩ ।
ଉତ୍କଳ ଖଣ୍ଡ କେନ୍ଦ୍ରରେ ଏ ସମ୍ବଲପୁର ।
ଗୋପାଳଜୀଉ ଠ ଦେବଙ୍କର ଯେ ମନ୍ଦିର ହେ । ୫୪ ।

ହୋସ୍ୱର କର୍ମରେ ଯୁକ୍ତ ହୋଇ କାଟେ ଦିନ ।
ଜାସ୍ୱୃଣ ଉଚ୍ଛିଷ୍ଟାନ୍ନ କରଇ ଭୋଜନ ହେ । ୫୫ ।
ବହୁକାଳରୁ ଏ ମଠ ସଂସ୍ଥାପିତ ହୋଇ ।
ସ୍ୱକର୍ମକୁ ଧ୍ୟାୟି ଗଲେ ହେବେକ ଏଠାଇଁ । ୫୬ ।
ଚୋହାନ ବଂଶ ବାଦସା ସହାନୁଭୂତିରେ ।
ଗ୍ରାମ ଆଦି ଖଞ୍ଜା ଅଛୁ ଧର୍ମ ଅନୁସାରେ ହେ । ୫୭ ।
ଯେହେତୁ ବଂଶଧରଙ୍କ କାର୍ଯ୍ୟକାରି ହୋଇ ।
ମନ୍ତ୍ର ଉପଦେଶ କାର୍ଯ୍ୟେ ଗୁରୁ ପୀଠ ଏହୁ । ୫୮ ।
ବଳଆର ସିଂହ ନରପତି ଥିବାକାଳେ ।
ମଠ ସଂସ୍ଥାପନା ହେଲା ଏହି ଶୁଭ ସ୍ଥଳେ ହେ । ୫୯ ।
ମଠ ଆଦ୍ୟ ବଂଶ ଅଛି ବଜ ହଦାହଣେ ।
ସ୍ୱମୂଳକୁ ସ୍ଥାପିଲେ ଯେ ସ୍ୱୀୟ ପ୍ରେମ ଧ୍ୟାନେ ହେ । ୬୦ ।
ଗୁଜପୂରନା ଦେଶସ୍ଥ ଯେ ସଲେମାବାଦ ।
ଗୁରୁ ପୀଠ ସ୍ଥାନ ବୋଲି ହୃଦେ କର ବୋଧ । ୬୧ ।
ଏକ ଗୁରୁ ଶିଷ୍ୟ ହୋଇ ଚଉଜଣ ଅଛି ।
ସ୍ୱକାନ୍ତ ବ ପ୍ରକାଶିଲେ ଧର୍ମ ଯେବେ ପଣି ହେ । ୬୨ ।
ଜ୍ୟେଷ୍ଠ ଜଣ ରହିଲେ ଯେ ପୁରୁଷୋତ୍ତମରେ ।
ଦ୍ୱିତୀୟ ଜଣଙ୍କ ବାସ ଏ ସମ୍ବଲପୁରେ ହେ । ୬୩ ।
ତୃତୀୟ ଜଣ ରହିଲେ କଟକ ନଗର ।
ଚତୁର୍ଥ ଆଶ୍ରମ କଲେ ଅମଦାବାଦର ହେ । ୬୪ ।
କହିଲି ଦ୍ୱିତୀୟଜଣ ଶ୍ରୀ ବିହାରୀ ଦାସ ।
ମଠ ସଂସ୍ଥାପକ ହୋଇ ପ୍ରାପ୍ତ ହେଲେ ବାସ ହେ । ୬୫ ।
ତାଙ୍କ ଶିଷ୍ୟ ଶ୍ୟାମ ଦାସ ମହନ୍ତ ଯେ ଦେଖ ।

ତହୁଁ ପଣି ସ୍ୱମଦାସ ମହନ୍ତଙ୍କୁ ଲେଖ ହେ । ୬୬ ।
ଅନନ୍ତ ରାମଦାସ ମହନ୍ତ ତାଙ୍କଠାରୁ ।
ଲଛୁ ରାମଦାସ ହେଲେ ତାହାଙ୍କ ଉତ୍ତାରୁ ହେ । ୬୭ ।
ଯମୁନା ଦାସ ହୋଇଲେ ତହୁଁ ଯେ ମହନ୍ତ ।
ଭଗବାନ ଦାସ ହେଲେ, ତହୁଁ ସେ ବିଦିତ ହେ । ୬୮ ।
ମାଧବ ଦାସ ମହନ୍ତ ତାଙ୍କଠାରୁ ଜାଣ ।
ଗୋପାଳ ଦାସ ମହନ୍ତ ମମ ଗୁରୁ ଯେନ ହେ । ୬୯ ।
ମୋ ଛନ୍ଦ ବିଷୟ ଏଥି କହୁଛି ବୁଝାଇ ।
ବଂଶର ଜନ ସକଳେ ହୃଦୟରେ ଧ୍ୟାୟି ହେ । ୭୦ ।
ରଦୁଜାଥିଆ ବ୍ରାହ୍ମଣ ଉତ୍କଳ ଦେଶରେ ।
ପ୍ରସିଦ୍ଧ ବ୍ରାହ୍ମଣ ବଂଶ ଭଲମୂଲ କରେ ହେ । ୭୧ ।
ପୂର୍ବ ବଂଶଙ୍କ ସ୍ଥାନ ଯେ ଅଟେ ଭଲମୂଲ ।
ସେଠାରୁ ଆସିଣଥିଲେ ଆମ୍ଭ ଆଦିକୁଳ ହେ । ୭୨ ।
ମଧୁସୂଦନ ତ୍ରିପାଠୀ ଆସିଲେ ଏଠାର ।
ଅନଙ୍ଗ ନାମେ ପୁତ୍ର ଥିଲା ତାଙ୍କ ସଙ୍ଗର ହେ । ୭୩ ।
ଅନଙ୍ଗର ହେଲା ଦେଖ ସେ ଚୃର କୁମର ।
କନିଷ୍ଠ ପୁତ୍ର ପାଇଲେ ମଠେ ଅଧିକାର ହେ । ୭୪ ।
ଜ୍ୟେଷ୍ଠ ପୁତ୍ର ନାରାୟଣ ହୋଇଣ ବିଦିତ ।
ପାଞ୍ଚଜଣ ପ୍ରଥମ ଭାର୍ଯ୍ୟାରୁ ଉପଗତ ହେ । ୭୫ ।
କନିଷ୍ଠପୁତ୍ର ଆମ୍ଭର ଗୁରୁ ଯେ ସାକ୍ଷାତ ।
ମଧ୍ୟମ ପିତା ଆମ୍ଭର ତାଙ୍କ ଗର୍ଭୁଁ ଜାତ ହେ । ୭୬ ।
ଦୁର୍ଗାନନ୍ଦ ତ୍ରିପାଠୀ ସେ ଦୁର୍ଗା ଯାର ଇଷ୍ଟ ।
ପାଟେଶ୍ୱର ଗୋତ୍ର ଶ୍ୟାମ ବେଦକୁଳ ଶ୍ରେଷ୍ଠ ହେ । ୭୭ ।

ହୋଇଥିଲ ଆଜ୍ଞା ବଶ ନୃପାଶ୍ୱନ ଜ ସେନ ।
ଗଳମୂଳ ଶୃଙ୍ଖଳ ଦାନାଧିପ ଯୋଜିବ ହେ । ୭୮ ।
ଦଶ ପୁନକ କର୍ମରେ ନୟୁକ୍ତ ହୋଇଣ ।
ବଂଶାନୁବଂଶ ପ୍ରମାଣେ ବଢନ୍ତ ତା ଜାଣ ହେ । ୭୯ ।
ସମ୍ବଲପୁର ନିକଟ ଲବଙ୍ଗା ଗ୍ରାମରେ ।
ଜନ୍ମ ହୋଇଥିଲି ତାଙ୍କ ଭୃତ୍ୟପୁ ଗର୍ଭରେ ହେ । ୮୦ ।
ବିକ୍ରମାଦିତ୍ୟ ଦ୍ୱାବିଂଶେ ଏ ଛଥିଙ୍କ ହେଜ ।
ଦୀନବନ୍ଧୁ ନାମେ ମୋର ସ୍ୱଶି ଚନ୍ଦ୍ର ବୃଷ୍ଟି ହେ । ୮୧ ।
ଜନ୍ମ ଏକୋଇଶ ସ୍କନ୍ଧେ ଶତ୍ରୁଘ୍ନ ନାମରେ ।
ପଞ୍ଚୁସପ୍ତ ସ୍ୱବଂଶରେ ନାମ ହେଲେ ମୋରେ ହେ । ୮୨ ।
ପିପିଲିକା ବଂଶକରେ ଶୃଙ୍ଖି ନାମ ଶ୍ରେଷ୍ଠ । ୮
ଦଦାତ୍ମ ଦାସ ଏ ନାମ ଅଟେ ଗୁରୁଦତ୍ତ ହେ । ୮୩ ।
ଶ୍ରାବଣ କୃଷ୍ଣ ପଞ୍ଚମୀ ୯ସେ ଗୁରୁବାସରେ ।
ଜନ୍ମ ହୋଇ ଭ୍ରମୁଅଛୁ ମହାଅରଣ୍ୟରେ ହେ । ୮୪ ।
ନବ କୋଟି କର୍ଣ୍ଣାଟ ଉତ୍କଳ ବର୍ଗପିଣ୍ଡ ।
ଗୌଡ଼େଶ୍ୱରଙ୍କଣି ଶେଷ ସେ ଯେ ଗଜପତି ହେ । ୮୫ ।
ଦିବ୍ୟସିଂହଙ୍କର ଅଷ୍ଟ ଅଙ୍କ ସମ୍ବତ୍ସରୁ ।
ଲାଭକର୍ମ ଜଣାଇଲି ଗୁବ ଭବ ଗୁରୁ ହେ । ୮୬ ।
ଅଧମଉଣରେ ଏହା ଜଣାଇଲି ହେଜ ।
ବାତୁଳ ପ୍ରାୟ ମୋ ଚିତ୍ତ ଅଜ୍ଞାନତା ଖୋଜ ହେ । ୮୭ ।
ଦୁର୍ଗୁଣ ମୋ ସଦାକାଳେ ତୁମ୍ଭ ସଙ୍ଗେ ଥାଉ ।
କ୍ଷମା ମାଗୁଅଛୁ ଦୟା ସଙ୍ଗେ ରଖ ସ୍ୱାଇ ହେ । ୮୮ ।
ତୁମ୍ଭ ସଙ୍ଗେ ଥାଇ ସରି ଯାଉ ମୋର ଦିନ ।

ଅନ୍ୟର୍ଥନା ମୋର ଏହା ବୃନ୍ଦାବନେ ଯେନ ହେ । ୮୯ ।
ନବଦ୍ୱୀପ ହୋଇ ରହିଥିଛ ତୁମ୍ଭ ସଙ୍ଗେ ।
ନବ ଯୋଗ ଜଣାଉଛ ଭଣ ଅନୁସାରେ ହେ । ୯୦ ।
ତୁମ୍ଭ ସଙ୍ଗେ କ୍ରୀଡ଼ା କର ଦେଖି ପ୍ରେମବାସ ।
ଏକାଣୋଇ ପଦରେ ବନ୍ଦନା କଲି ଶେଷ ହେ । ୯୧ ।
ଅଧ୍ୟାତ୍ମ ସମ୍ବନ୍ଧ ଜଣାଇବା ଇଚ୍ଛା କରୁ ।
କର ଯୋଡ଼ି ଟିଅ ହେଉଅଛି ମୁଁ ବଡ଼ାଗ୍ରୀ ହେ । ୯୨ ।
ଅଣା କର ସ୍ନେହରଜ୍ଜୁ ଧର ଝୁଲୁଅଛି ।
ବଡ଼ାଗ୍ରୀ ଦାସ ତୁମ୍ଭର ସ୍ତବରେ ରହିଛି ଯେ । ୯୩ ।

—০ঃ০—

ଅଧ୍ୟାତ୍ମଚନ୍ତା ।

ରାଗ କାମୋଦୀ ।

ଅବ୍ୟକ୍ତ ଯାର ଗୁଣ ନ ଥାଇ ଶବ୍ଦ ବର୍ଣ୍ଣ ଚତୁର୍ଦ୍ଦଶ ଭୁବନେ ବ୍ୟାପ୍ତ । ଅନନ୍ତ ବ୍ରହ୍ମମୂର୍ତ୍ତି ଯୋଗୀ ଧ୍ୟାନ କରନ୍ତି ଭକ୍ତ ସ୍ତବରେ ଥାନ୍ତି ବ୍ୟସ୍ତ ସେ । ଅଲକ୍ଷିତ । ଅଖିଳ ବ୍ରହ୍ମାଣ୍ଡରେ ସ୍ଥିତ । ଅଚ୍ୟୁତାନନ୍ଦ ଦଶାକ୍ଷ ଯୁକ୍ତ । ଅନାଦି ରୂପ ସେହି ଅଲେଖ ବର୍ଣ୍ଣଦେହୀ ସେହି ପ୍ରଭୁଙ୍କୁ ମନେ ଚନ୍ତ । ୧ ।

ଅଚ୍ଛାଦିତ ବ୍ରହ୍ମାଣ୍ଡ ତାର ତେଜ ପ୍ରଚଣ୍ଡ ଯା ଅଦେଶେ ଭ୍ରମେ ମାର୍ତ୍ତଣ୍ଡ । ଅନାଶରେ ଅନନ୍ତ ପାତାଳେ ଯା ଚରଣ ଉଦରେ ଶୋଭିତ ବ୍ରହ୍ମାଣ୍ଡ ସେ । ଅଦିପ୍ରଭୁ । ଅମ୍ବାରୂପରେ ଯେତେ ବିଭୁ । ଯାତାଯାତ ଥାଙ୍କର ଗର୍ଭ । ଅଶିଣ ମର୍ତ୍ତ୍ୟପୁରେ ଅବତାର ଯେ ଧରେ ରକ୍ଷା ଅରକ୍ଷା କର୍ତ୍ତା ସର୍ବ । ୨ ।

ଇଚ୍ଛା ରୂପରେ ଥାଇ ବେଣୁ ଧରିବ କହି ସେହି ଗୁପଙ୍କୁ ଧ୍ୟାୟି

ରହ । ଇଚ୍ଛା ଜାଣି ସୁଫଳ ଦଅନ୍ତି ସେ କେବଳ ଶୁଦ୍ଧଶୁଭ ତାଙ୍କ ଅଭୟ ଯେ । ସୁଜ୍ଞଜନର । ଇହଜନ୍ମଟି ଏ ସଂସାର । ଇତ୍ୟାଦ ସୁଖ ମଣ ସାର । ଇହ ମଣିଲେ ସୁଖ ପରେ ପାଇବ ଦୁଃଖ ବୁଝି ବସିଲେ ଦୁଃଖା-ଗାର । ୩ ।

ଇହ ମର୍ତ୍ତ୍ୟଭୁବନେ ଅନେକ ଋଷିଗଣେ ବସିଣ ଯୋଗଧ୍ୟାନେ ଭଜ । ଇହ ଲୋକରୁ ପାର ହେଲେ ସେ ଋଷିବର ହେଲେ ସେ ଯୋଗବଳେ ଗଜ ସେ । ଇଚ୍ଛାରୂପେ । ଈଶ୍ୱର ପାଇଲେ ସମୀପେ । ଏପରି ଯୋଗୀ ପ୍ରଭୁ ଅଟେ । ଇହ ସଂସାର ମାୟା ଭେଦ ନାହିଁ ସା-କାୟା ଯାର ବଚନେ ମନ୍ତ୍ର କର୍ମେ ହେ । ୪ ।

ଉମାଦ ମହେଶ୍ୱର ଭଜନ୍ତି ଯା ପଦ୍ମ ର ହୋଇଣ ଯୋଗେଶ୍ୱର ସେହୁ । ଉପାସ ବ୍ରତ କରୁ କେ କେତେ ତପସ୍ୱୀ ଦୃଢାଶାନଙ୍କୁ ଧରି ରହିଁସେ । ହୃଦବସିଲେ । ଉପମା ରହିଛି ଏସ୍ଥଳେ । ଉତ୍ତମରୂପେ ଯେ ବୁଝିଲେ । ଉଦ୍ଧାର ବାଟ ସେହୁ ଅମ୍ଭେ ପାଇବୁ କାହିଁ ପ୍ରଭୁଙ୍କ ଆଜ୍ଞା ତ ନୋହିଲେ ।

ଉପାସନା ନ ଜାଣି କେତେକ ମୂଢ ପ୍ରାଣି ନାମ ଧରିଣ ହେଲେ ପାର । ଉପଦ୍ରବ ଦେଖିଲେ ଅସତ କର୍ମସ୍ଥଳେ ନାମ ଅଙ୍କାର ହେଲେ ଗାରହେ । ତନ୍ନାୟୁଧ । ମାୟାଚକ୍ରରେ କଲେ ବନ୍ଧ । ମାୟାମୋହରେ କରୁ ଅନ୍ଧ । ଉପାୟ କଲା ଯାହା ଫଳ ଭୁଞ୍ଜିଲା ତାହା ଧର୍ମଦ୍ୱାରେ ଦଣ୍ଡିତ ଭେଦ । ୬ ।

ରୂପ ଅନେକ ହୋଇ କର୍ମ ଜାଣି ବିହରୁ ସକଳ ଘଟେ ନାରାୟଣ । ରୁଚି ଅରୁଚି ବାଛୁ କରୁଛ ନାହିଁ କେହି ସବୁଠାରେ ବ୍ୟାପିଛ ଜାଣ ହେ ସୁଜ୍ଞଜନେ । ଆତ୍ମାକୁ ଆତ୍ମା ନାଶ କରେ । ସ୍ୱାଭାବିକ ଯେ ରୂପ ଧରେ । ରୂପ ବିବିଧ ରୂପେ ନାଶ ହୁଅଇ ଅଟେ ହିଂସାଭିମାନଙ୍କ କେଉଁରେ ହେ ସୁଜ୍ଞନରେ । ୭ ।

ରୂପ ବର୍ଣ୍ଣିବା ପାଇଁ ନାରଦ ବୀଣା ବାଇ ଅନେକ ରୂପେ ସ୍ତୁତି ଗଲେ । ରୂପ ନାହିଁ ଯାହାର ନାମ ତା ସର୍ବେଶ୍ୱର ବୋଲିଣ ନାମ ଖଞ୍ଜି କଲେ ସେ ॥ ଜତେନ୍ଦ୍ରିୟ । ହୃଦୟେ ହୋଇଲେ ବିସ୍ମୟ । ଯିପୁରେ ପାଇଣ ଅଭୟ । ରୂପାନନ୍ଦ ସଙ୍ଗରେ ଚତୁର୍ଦ୍ଦଶଲୋକରେ ନାମ ଗାନରେ କାଳ କ୍ଷୟ ସେ । ୮ ।

ଲୋମ ବଲୋମ ଦୁଇ ଯିଗୁଣ ତହିଁ ଥାଇ ପଞ୍ଚ ମହାଭୂତ ସେ ହେଲେ । ଲୋମ ନାମଟି ଚିତ୍ର ବଲୋମ ଯେ ଅତେବ ଚୈତନ୍ୟ ନାମକୁ ପାଇଲେ ଯେ । ଏହା ଦେଖ । ଯିଗୁଣ ତହିଁରେ ଯେ ଯୋଗ । ସତ୍ତ୍ୱ ରଜ ତମ ପ୍ରତ୍ୟକ୍ଷ । ଲୁପ୍ତ ହୋଇଣ ତହିଁ ବିଧାତା ସ୍ଥାନ ପାଇ ତହିଁରୁ ବେଦ ଏ ପ୍ରତ୍ୟକ୍ଷ ଯେ । ୯ ।

ଛୁଟି ରହିଛନ୍ତି ଦେହେ ପଡିଣ ମାୟାମୋହେ ଦେଖି ନ ପାଇ ଦୁଃଖ ବାୟୁ । ଲୁପ୍ତ ହୋଇଣ ବ୍ରହ୍ମା ବୋଲାଏ ବିଶ୍ୱକର୍ମା ତହିଁରୁ ସର୍ଜନା ଏ କାୟା ହେ । ବୁଧଜନେ । ଯବ ବୁଝିବ ଅସ୍ତଜ୍ଞାନେ । ସମସ୍ତେ ଛନ୍ତି ସ୍ଥାନେ ସ୍ଥାନେ । ଲୁପ୍ତ ହୋଇଣ ଏଥି ଯବ ପାଇବ ଦେଖି ଯିପୁର ଇଶ ସନ୍ନିଧାନେ ହେ । ୧୦ ।

ଏହି ନର ଦେହରେ ପଡି ମାୟାମୋହରେ ସମସ୍ତେ ହୋଇଛନ୍ତି ଠୁଳ । ଏହା ବୁଝି ବସିଲେ ଦେଖ ହୃଦୟସ୍ଥଳେ ବାସୁକୀ ଯେଉଁ ପାଦ ମୂଳ ସେ । ପାତାଳ ଯେ । କଟି ପର୍ଯ୍ୟନ୍ତେ ତହିଁ ଖଣ୍ଡ । କଟିଠାରୁ ମର୍ତ୍ତ୍ୟକୁ ହେଜ । ଏହୁ ଯେ କଣ୍ଠ ଦେଖ ତହିଁ ସ୍ୱର୍ଗ ପ୍ରକାଶ ଯିପୁର କରି ଏହା ଖୋଜ । ୧୧ ।

ଐକ୍ୟ ନ ଥାଇ କେତେ ସବୁ ପୂରି ରହିଛି ଯାହା ଭାବିବ ତାହା ଦେଖ । ଐଲ କର ଦେହରେ ବୁଝି ନ ପାଇବାରେ ମିଥ୍ୟାରେ ହୋଇଛ ବିମୁଖ । ହେ ବୁଧଜନେ । ବର୍ଣ୍ଣିବାକୁ ମୁଁ କି ଜାଣେ । ମହାମୂଢ଼ ତୁମେ

ଅଜ୍ଞାନେ । ଜୀବନ ଥାଉ ଯାରେ ବ୍ରହ୍ମାଦି ବେଦସ୍ୱରେ ବର୍ଣ୍ଣି ଭ୍ରମୁଥାନ୍ତି ଗହନେ ହେ । ୧୨ ।

ଓଁକାର ପଦ ଯେଉଁ ସାଖାରେ ପଦ ସେହି ତେଣୁ ମନ୍ତ୍ର ଆଦ୍ୟରେ ଥାଏ । ଓଁକାର ପଦ ଧରି ଶବ୍ଦ ନାଦ ବିପୁଳ ବେଦବାକ୍ୟରେ ଶୋଭା ପାଏ । ହେ ବୁଧଜନେ । ଓଁକାର ଥାଏ ଯୋଗ ଧ୍ୟାନେ । ଋଷିମାନଙ୍କ ବ୍ରହ୍ମଜ୍ଞାନେ । ଓଁକାରୁ ବେଦ ହେଲା ଶବ୍ଦନାଦ ପୂରଣ ପ୍ରକାଶେ ଚଉଦ ଭୁବନେ ହେ ବୁଧଜନେ । ୧୩ ।

ଔଷଧାଦି ନ ଥିଲେ ଜନ୍ତୁ କି ଏ ସ୍ଥଳେ ବିଶ୍ୱର ସ୍ୱଷ୍ଟିଦୃଶ୍ୟମୂଳେ । ଔଷଧ ବୋଲି ବୃକ୍ଷ ଆଦି ହେଲେ ପ୍ରଥମେ ବିଧାତା ସର୍ଜନାକୁ କଲେ । ସେ ପଶ୍ଚାତରେ । ଜୀବାଦି ଜାତ ଏ ସଂସାରେ । ଏହା ଦେଖ ଭଗବଂତରେ । ଔଷଧାଳୟ ବୋଲି ଏହିଟି ମଣ୍ଡଳୀ ସଂସାରେ ହୋଇଛି ବିଦିତ । ୧୪ ।

ନ ସ୍ୱନ୍ଦାର ସ୍ଥେ ହର ପୂର୍ଣ୍ଣ ବ୍ରହ୍ମ ପ୍ରସରି ସଂସାରେ ଯେଉଁ ଅବତରୁ । ଅନ୍ତର୍ଯାମୀ ପୁରୁଷ ସକଳ ଘଟେ ବାସ ତାଙ୍କୁ ସ୍ମରଣ ହୃଦେ କର ହେ ବୁଧଜନେ । ସ୍ୱରବର୍ଣ୍ଣରେ ଗୀତ ଯୋଡ । ମାୟା ଅର୍ଣ୍ଣବ ମୂହିଁ ପଡ଼ । ଅଳିତ କଲି ଏହା ବୁଝି ନ ପାରି ତହା ମାୟାସାଗରେ ଅଛୁ ଜଡ ହେ । ୧୫ ।

ଅଂକାରଣେ ମୋ ଜୀବ କଷ୍ଟେ ବାହାରି ଯିବ କ ପାଉବ କିଛିହିଁ ଠାବ । ଅନ୍ତଃକରଣେ ମୋର କିଛି ନାହିଁ ଈଶ୍ୱର ଯାହା କରୁଣା ତାଙ୍କ ହେବ ହେ । ବନ୍ଧୁଗଣେ । ମୋର ଗୁହାରି ଏବେ ଶୁଣ । ଦୋଷଥିଲେ ଦୋଷ କ୍ଷମ ସେବ । ଅଜ୍ଞାନ ମୂର୍ଖ ମୁହିଁ କିଛି ଜାଣଇ ନାହିଁ ହତାଶ ଦାସର ଜଣାଣ ହେ । ୧୬ ।

———

କୃଷ୍ଣସ୍ତବ । ରାଗ ରାମକେରୀ ।

ଭଜ ବ୍ରଜପୁର ମଣ୍ଡନ ତାଙ୍କ କୀର୍ତ୍ତି କଳାପ ।
ସମସ୍ତ ପାପ ନାଶକାରୀ ଖଣ୍ଡନ୍ତି ଭବତାପ । ୧ ।
ସର୍ବ ଜୀବ ତୋଷ ଦାୟକ ଏକା ସେ ନାରାୟଣ ।
ସର୍ବ ଦେବତା ସେହି ଜାଣ ପ୍ରଭୁ ନନ୍ଦନନ୍ଦନ । ୨ ।
ଶୋଭଇ କଟିତଟ ପୀତପଟ୍ଟ କାଞ୍ଚେଣି ରାଜେ ।
କୁସୁମ ଗୁଚ୍ଛ ଚୂଳପରେ ଶୋଭଇ କୋଳ ସାଜେ । ୩ ।
ସୁନ୍ଦର ନାଦ ସ୍ୱର ବେଣୁ ବଂଶୀ ଶୋଭଇ ଥାଇ ।
କନ୍ଦର୍ପ ସାଗର ସେ ହରି ରଙ୍ଗେ ଗୋପୀଙ୍କୁ ମୋହି । ୪ ।
ନମସ୍ତେ ଶ୍ରୀକୃଷ୍ଣ ନାଗର ମନୋଜ୍ଞ ଗର୍ବହନ୍ତା ।
ବିଶାଳ ଶୋଭଇ ନୟନ ସର୍ବ ଜୀବ କରତା । ୫ ।
ଗୋପୀଙ୍କୁ ଐଶ୍ୱର୍ଯ୍ୟ ଦାୟକ ପଦ୍ମଲୋଚନ ହରି ।
ଦନ୍ତାଗ୍ରେ ବିନ୍ଦୁ ପ୍ରମାଣେ ଯେ ପୃଥ୍ୱୀ ଧାରଣ କରି । ୬ ।
ପୂର୍ବ ପୁରାଣେ ସେ ଯା କୀର୍ତ୍ତି ଲୋକୋଦରେ ବିଖ୍ୟାତ ।
ଶଚୀନାଥ ମଦ ହରିଲେ ସାକ୍ଷାତେ ଜଗନ୍ନାଥ । ୭ ।
ନମସ୍ତେ ଶ୍ରୀକୃଷ୍ଣ ମୁରାରି ଦୁଷ୍ଟଙ୍କୁ କାଳ ହତ ।
ମକର କୁଣ୍ଡଳ ଗଣ୍ଡରେ ତେଜରୂପ ଅନନ୍ତ । ୮ ।
ବ୍ରଜାଙ୍ଗନାଙ୍କର ବଲ୍ଲଭ ନମସ୍ତେ କୃଷ୍ଣ ମୂର୍ତ୍ତି ।
ଅମ୍ଭଙ୍କୁ ସେ ପ୍ରଭୁ ଦୁର୍ଲ୍ଲଭ କାହିଁ ପାଇବୁଁ ଗତି । ୯ ।
ବାଳ କାଳେ ମାୟାଧର ସେ ମାୟାଭାବ ବିସ୍ତାରି ।
ମୃତ୍ତିକା ଭକ୍ଷଣେ ମାତାଙ୍କୁ ଦେଖାଇଲେ ତ୍ରିପୁରୀ । ୧୦ ।
କ କହିବି କୃଷ୍ଣ ଚରିତ ବେଦ ଅଗମ୍ୟ ମୂର୍ତ୍ତି ।
ମାୟା ଦେଖାଇବାପାଇଁ ସେ କୋପ କାନ୍ତ ବଦନ୍ତ । ୧୧ ।

ଯଶୋଦାଙ୍କ ଅଗ୍ରେ ଭେଳୋକ୍ତି ଭଣନ୍ତେ ସେ ଶ୍ରୀହରି ।
ମନ୍ଥନ ଦଣ୍ଡରେ ବାନ୍ଧଲେ ଯଶୋଦା କ୍ରୋଧ କରି । ୧୨ ।
ବନ୍ଧା ଯିବା କାଳେ ଦେଖିଲେ କୃଷ୍ଣ ଅଦ୍ଭୁତ କାଣ୍ଡ ।
ଛନ୍ଦଣ ଦେଲେ ତାହାଙ୍କୁ ସେ କୃଷ୍ଣ ବିଚିତ୍ର ମାୟା । ୧୩ ।
ନମସ୍ତେ ଟେ ନନ୍ଦ ଯଶୋଦା ନମସ୍ତେ ଭଗବାନ ।
ନମସ୍ତେ ସେ ବୃନ୍ଦାବନ ଯେ ସଙ୍କେତ ଭୂମି ସ୍ଥାନ । ୧୪ ।
ନବକାଳେ ଗୋପନାଗର ଗରୁଡ଼ ଧ୍ୱଜ ହରି ।
ନବମାୟା ପ୍ରକାଶିଣ ସେ କେଳ କର୍ତ୍ତା ମୁରାରି । ୧୫ ।
ସଂସାର ସାଗର ମଧ୍ୟରେ ସୁନ୍ଦରରୂପ ଶୋଭି ।
ଭଜେ ବ୍ରଜପୁର ମନର ଧସ ଅଗମ୍ୟ ଲୋଭି । ୧୬ ।
ସଦା ସର୍ବଦା ତୋ ପାଦରେ କରିବାକୁ ନିବାସ ।
ମୋ ହୃଦୟେ ଏହା ବହୁଛନ୍ତି ରହୁ ମୋର ମାନସ । ୧୭ ।
ସମସ୍ତ ଗୋପ ନାଗର ହେ ବ୍ରଜାଙ୍ଗନା ମୋହନ ।
ନମାମି ହେ କୁଞ୍ଜବିହାରି ସୌନ୍ଦର୍ଯ୍ୟ ଶୋଭାବନ । ୧୮ ।
ଏକାଦଶ ରବି ଶ୍ରୀଅଙ୍ଗେ ତେଜଦାଅ ବସ୍ତ୍ରାର ।
ନିତ୍ୟ ନବ ନବ ରୂପରେ ନନ୍ଦଙ୍କ ତୋଷ କାର । ୧୯ ।
ଗୁଣାକର ସୁଖାକର ହେ କୃପାକର ହେ ସ୍ୱାମି ।
ସୁରାସୁର ଶୁଭଦାୟକ ସାକ୍ଷାତେ ଅନ୍ତର୍ଯାମୀ । ୨୦ ।
ନମାମି ଗୋପଭାୟକ ହେ ସର୍ବଦୋଷ ନାଶନ ।
ସର୍ବ ଐଶ୍ୱର୍ଯ୍ୟ ଦାୟକ ହେ ଭକ୍ତଗଣ ରକ୍ଷକ । ୨୧ ।
ନମସ୍ତେ କୃଷ୍ଣପ୍ରେମ ମୂର୍ତ୍ତି ଲାଳସା ପୂର୍ଣ୍ଣକାର ।
ଗୋପୀନାଥ ପ୍ରଭୁ ହୋଇଣ ଗୋପୀଙ୍କ ହୃଦକାରୀ । ୨୨ ।
ନିଷ୍କାମ ସକାମ ଦାୟକ ସକଳେ ସ୍ତୁଲେ ସ୍ଥିତ ।

ଜଗତ୍ସୁନ୍ଦର ମୂରତ ପଞ୍ଚସାୟକ କୀର୍ତ୍ତି । ୨୩ ।
ଉଚ୍ଚାଇଣ ବେଣୁ ନାଦରେ ଦେଖାଇଣ ଚତୁଭୁଜ ।
ଭବ ଉଦ୍ଭବ ତାରକ ଦେହ ଦେଖାଅ ବ୍ରହ୍ମ ଜ୍ୟୋତ । ୨୪ ।
ସଂସାର କାରଣ ପାଇଁ ତ ଯଶୋଦା ଗର୍ଭୁଁ ଜାତ ।
ବାଲ କ୍ରୀଡ଼ାରେ ଦୁଗ୍ଧବେଶ ଦେଖାଉଛ ଅଦ୍ଭୁତ । ୨୫ ।
ମାୟା ପ୍ରକୃତ ବଦନ୍ତରେ ମୁଗ୍ଧକଲ ଗୋପୀଙ୍କୁ ।
ମନୋଜ୍ଞ କାମନା ଯା କଲେ ଦେଉଅଛ ତାହାଙ୍କୁ । ୨୬ ।
ନମସ୍ତେ ଦୁଷ୍ଟ୍ୟବେଶ୍ୱ ନର୍ସ୍ତ୍ର ବୃନ୍ଦାବନ ବିହାର ।
ଅବୋଧ ହୋଇଣ ସଂସାରେ ଲିପି ଯାଉଛୁ ହର । ୨୭ ।
ସଂସାରାଗ୍ନିରେ ଦଗ୍ଧହୋଇ ଛନ୍ନ ବନ୍ଧୁ ଜୀବନ ।
ଏବେ କେଣେ ହେଲେ ନ ପାରେଁ ନାମ କରି ସ୍ମରଣ ।୨୮
ତଥାଚ କୃଷ୍ଣସହ କଥାରେ ମମ ହୃଦୟ ବାସ ।
ରକ୍ତ ସନ୍ତତରେ ମାଗୁଛୁ କରିଅଛୁ ମୁଁ ଆଶ । ୨୯ ।
ସେହୁ କୃପା ମୁଁ ଯେ ପାଇଣ କର୍ମ ଦଶାକୁ ଧରି ।
କାଟିବି ଏ ଭବ ଜଞ୍ଜାଳ ତୁମ୍ଭ ପାଦକୁ ସ୍ମରି । ୩୦ ।
ହରମନ୍ଦରଚଢା ଶୋଭେ ବସ୍ତ୍ରସ୍ୱର କପାଳେ ।
କଉସ୍ତୁଭମାଲ ଶୋଭିତ ଯାହାର ବକ୍ଷସ୍ଥଳେ । ୩୧ ।
ନାସାରେ ଗଜମୁକ୍ତାର ବସଥିଣି ଝଟକେ ।
କରରେ କଙ୍କଣ ବସନ୍ତେ ବସିଥାଉ ଛଟକେ । ୩୨ ।
ମଳୟଚନ୍ଦନ ଶ୍ରୀଅଙ୍ଗେ ସୌନ୍ଦର୍ଯ୍ୟ ଶୋଭା ପୁଞ୍ଜ ।
କଣ୍ଠେ ମୁକ୍ତାମାଲ ରହିଛି ଆବର ଗୁଞ୍ଜ ଗୁଞ୍ଜ । ୩୩ ।
ଗୋପ ନାୟିକା ଚତୁର୍ଦ୍ଦିଗେ ବେଢ଼ି ରହିଣଛନ୍ତି ।
ତନ୍ମଧ୍ୟେ କୃଷ୍ଣ ବନଜ୍ୟୋ ଉଡ଼ାଇ ଶୋଭା କୀର୍ତ୍ତି । ୪୪ ।

ସେହିରୂପ ଗୃହିଁ ରହିଛ କରି ହୃଦପ୍ରକାଶ ।
ସଙ୍କେତ ବୁଝିଲ କେବେ ହୁଏ ବଳାଶ୍ରୀ ଦାସ । ୩୫ ।

---

ପଦ ।

ରାଗ । ରସକୋଇଲି । ୪

ଭାବର ହେ ବୃକ୍ଷେ କୋହ କୃଚନ୍ଦ୍ର । ଯାହା ସୃଷ୍ଟିଛ ଏ ମାୟା ଭୁବନ । ବସ୍ତୁ ମୋହନ ଭାବ ପ୍ରକାଶ । ଅମୂଲ୍ୟ ହୃଦୟ ଧ ଦର ଜାଣ ଯେ । ଭଜ ସେ ଜଗତ ଇଶ ଯେ । ଯାକୁ ଭଜିଲେ ସଂସାରୁ ମୋକ୍ଷ ହେବ ପିଅ ସେହି ପ୍ରେମ ରସ ଯେ । ୧ ।

ଅନିତ୍ୟ ସଂସାର ହୃଦୟ ଧରି । ମଦନ ପ୍ରେମରେ ହୋଇଣ ପାଗ । ଭ୍ରମୁଅଛ ଏହି ଦବା ସଂସାରେ । ଏହା ସର୍ଜନା କର୍ତ୍ତା ଯେଉଁ ବକ୍ତି ଯେ । ତାଙ୍କୁ ଦେଖ ନେତ୍ର ଭରି ଯେ । କେମନ୍ତେ ଏ ମାୟା ବସ୍ତାର କାରକ କପରି ସେ କାରିଗରି ଯେ । ୨ ।

ମଦାନ୍ଧରେ ସଙ୍ଗେ ହୋଇଲେ ମତ୍ତ । କାମନା ତରଙ୍ଗେ ଭ୍ରମଇ ଚିତ୍ତ । ବୁଝି ନ ପାରିଲ ଯାହା ସେହିର । ବୃଥାରେ କାଳ କରୁଥାଉ ହତ ଯେ । ଭାବ ସେ ଯାହା ଉଚିତ ଯେ । ଭବପାଶ ହୋଇ ଭୂମି ସଙ୍ଗେ ଥାଇ ଭ୍ରମୁଛ ମୁହିଁ ଜାଣତ ଯେ । ୩ ।

ଭାବର ରେ ଯାହା ହେଲ ପ୍ରକାଶ । ତାହା ଜଣାଉଛି ମୁଁ ତୁମ୍ଭପାଶ । ସୁଜ୍ଞଜନେ ନ ଧରିବ ଯେ ଦୋଷ । ପ୍ରଭୁ ପାଦ ପଦ୍ମେ କରିଣ ଆଶ ଯେ । କରିଛି ଏହା ମୁଁ ଭାଷ ଯେ । ନୃହଇ ନୋବଦ ଅଟଇ ନବୋଧ ପ୍ରଭୁ କଲେ ଯାହା ଦୃଶ୍ୟ । ୪ ।

ତ୍ରିଗୁଣରେ ବନ୍ଧୁ ଏହି ସଂସାର । ତ୍ରିବିଧରେ ଜୀବାଦ ଯେ ଅକା-ର । ଜୀବାଦ ମଧ୍ୟେ ଶ୍ରେଷ୍ଠ ମାନବ ସାର । ମାନବ ଦାନବ ଦୁଇ ପ୍ରକାର

ସେ । ଉଥଣ କର୍ତ୍ତ ଉଣର । ସାମଞ୍ଜସ୍ୟ ସାମିଲନ ସାମାଜିକ ସାମର୍ଥ୍ୟ
ସେବଣ କର ସେ । ୫ ।

ସେ ନର ମାନବ ବୋଲି ଜାଣିବ । ଅବର ଦାନବର ଦେଖ
ସ୍ୱବ । ସାତ୍ତ୍ୱିକ ସାତ୍ତ୍ୱିକ ସେ ଦେଖିବ । କଠିନତା ହୃଦୟ ଯାର
ଥିବ ସେ । କଷ୍ଟ କୁଟିଳ ଯା ଗର ସେ । କୁଟଜାତ କଥା କହୁ ଦବ
କଥା ସେହୁ ଦାନବ ଏ ଭବ ସେ । ୬ ।

ଧର୍ମ ଦାଣ୍ଡ ମାନବଙ୍କ ଏ ପୁର । ଧାରଣ କାରଣ ହୁଅପ୍ରକାର । କାରଣ
ପଥରେ ସେବଣ କର । ଗମିବ ଯାଇ ପବିତ୍ର ନଗର ସେ । ଲୋଭ
ଭସ ସ୍ନେହ ଛାଡ଼ି ସେ । ଜୀବ ପୁନର୍ଜନ୍ମ ନ ପାଇବ । ଲୋଡ଼ି ସଂସାର
ବନ୍ଧନ୍ତୁ ଏଡ଼ି ସେ । ୭ ।

ଶ୍ରୀ ଦୟାନିଧିଙ୍କଣେ ଲଗାଇ ଧ୍ୟାନ । ଯୋଗ ବଳେ ସେ ଦେଖିବେ
ଭୁବନ । ମହାଜନ ଜାଣିବ ସେହୁ ଜନ । ମହାଜନ ସ୍ୱବ ଅପଣା ମନ
ସେ । ମହାତ୍ମା ସମାଧି ଗୁଣ ସେ । ଅବର ମାନବ ଧାରଣ ଦାଣ୍ଡରେ
ଗମିବା କହୁଛି ଶୁଣ ସେ । ୮ ।

ହଦସ୍ଥ ହୋଇବ ପ୍ରେମ ରଙ୍ଗରେ । ହରଷିତ ହେବ ସ୍ୱକୁଳ
ଧର୍ମରେ । ବକ୍ଷୀଳ ଭାବ ଭ୍ରମିବ ସଂସାରେ । ସମାଧି ନ ଥାଇ ପରିବାର-
ରେ ସେ । ସତ୍ୟରେ ସେ ସମ୍ପାଦନ ସେ । ସଦାଚାର ହୋଇ ସତ୍ୟ ଗୁଣ
ବହୁ ଅନନ୍ତ କଲ୍ଲୋଳ ଜାତ ସେ । ୯ ।

ସତ୍ତ୍ୱ ରଜ ତମ ତ୍ରିଗୁଣେ ଖଣ୍ଡିତ । ସେହୁ ତ୍ରିଗୁଣରୁ ଜନ ଏ ଜାତ ।
ପ୍ରକାଶ କରୁଛି ଯା ହେଲା ଜ୍ଞାତ [illegible] ବୁଧ ଜନେ ତୁମ୍ଭ ହୃଦୟଗତ ସେ ।
ମୁଁ ଅଟେ ବାଳକ ମୂଢ଼ ସେ । [illegible] ସଂସାର କଳ ହେ ପାରିବ
ବେଦାନ୍ତରେ ଯାହା ମୂଢ଼ ସେ । ୧୦ ।

ସତ୍ତ୍ୱରେ ଯାହା ମୁଁ କହୁଅଛି । ତୁମ୍ଭ ଅନ୍ତରରେ ତାହା କହୁଛି ।
ସତ୍ତ୍ୱଗୁଣରୁ ଯେ ନର ଜନ୍ମିବ । କାହିଁ ପଥରୁ ସେହୁ ଶୁଣିବ ସେ ।

ରଜଗୁଣେ ଯେହୁ ଜାତ ଯେ ମାନବ ବୋଲଣ ତାହାଙ୍କୁ ଜାଣିବ ପ୍ରେମ-ଗୁଣ ତା ଗୃହିତ ଯେ । ୧୧ ।

ତମଗୁଣେ ଜାତ ଯେତେ ମନୁଷ୍ୟ । ଦାନବ ବିଦ୍ୟାରେ ତାଙ୍କ ମାନସ । ସନ୍ତତରେ ତାଙ୍କ ହୃଦୟ ବାସ । ଯାହାସ ଉଦ୍ବିଗ୍ନ ବହୁଣ ଦ୍ୱେଷ ଯେ । ଦେହୁଥାନ୍ତି ସେ ପ୍ରକାଶ ଯେ । ବଧ୍ୟ ବଧାନ ସକଳ ଦୂର କରି ବତ୍ତମ୍ବନ ଭଷେ ଅଣ ଯେ । ୧୨ ।

ଏହୁପରି ମାନବଙ୍କ ବଧାନ । ଦେହିରେ ପ୍ରକାଶିତ ନାନାବର୍ଣ୍ଣ । ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରେଣ । ପଢନ୍ତି ଦାସ ଗୃଣ୍ଡାଲ ସେ ପୁଣ ଯେ । ବବଧ କୁଳେ ସମ୍ଭୂତ ଯେ । ବେଦପଢ ଏହା ଭଅଣ ଜଗତ ବୁଝିବ ହୋଇ ବ୍ୟବତ ଯେ । ୧୩ ।

ଏଥିଉତ୍ତରୁ ମୁଁ କହେଁ ପୁଣ । ଦେଖ ଏ ସଂସାର ଅଦ୍ଭୁତ ବନ । ବଚଣ୍ଡ ଶରୀର ଏହା ପାଟଣ । ଦେଖାଅ ଲାଗି ଯାହା ସେ ଶୋଭନ୍ତ ଯେ । ଶୋଲ୍ଲୁନ୍ତ୍ରବ ନକନା ଯେ । ଏହା ସେ ଗୃହିଣ ଶୋଭିତରେ ପୁଣ ଧାଏ ଯେ ସେ ଅଦ୍ଭୁତା ଯେ । ୧୪

କୁଳ ଧର୍ମାନୁଯାୟୀ ସେ ଜନକ । ମନୁ ବ୍ୟାସାଦଙ୍କ ଦେଖ ପୁରାଣ । ପାରଦର୍ଶୀ ହୋଇ ଦେଖ ଭୁବନ । ପ୍ରେମରସପ୍ଳୁତ ହୃଦେ ବହୁଣଯେ । ଇଚ୍ଛାଅନୁଯାୟୀ ମଦ ଯେ । ଚିଉଣ ସଂସାର ଗୃହିଣ ଦେହ ବୁଝେ ବାଧ ଏ ଭବ ବଶାଦ ଯେ । ୧୫ ।

ମଦ ଯେତେ ଅଂଶେ ହୋଇଛୁ ସ୍ଥିତ । ତାହା କହୁଛୁ ମୁଁ ଶୁମ୍ଭ ଅନ୍ତତ । ଉତ୍ତମ ମଧ୍ୟମ କନିଷ୍ଠ ଖ୍ୟାତ । ସଂସାରରେ ତାହା ଅଛି ବଦତ ଯେ । ଶୁଣ ସେ ମଦ ଲକ୍ଷଣ ଯେ । ପ୍ରକାଶିତ କରି କହୁ ତା ଯୁକ୍ତି ଭାବ ଗୃହିଁ ଅନୁଷ୍ଠାନ ଯେ । ୧୬ ।

ବାରୁଣୀ ପ୍ରସ୍ତୁତ ଯନ୍ତ୍ରକୁ ଦେଖ । ତାହା ସଙ୍ଗେ ଏହୁ ହୃଦୟ ରଖ । ସାତ୍ତ୍ୱିକ୍ୟ କର୍ମ ସ୍ଥିତ ଯେଉଁ ଲୋକ । ହରିରସମଦ ଚାହିଁ ରଖ ଯେ ।

ମଧୁବୃତ୍ତ କେବଳ ଶ୍ଳୋକ ଯେ । ସ୍ୱୟଂ ନାରାୟଣ କର୍ତ୍ତା ବୋଲି ଜାଣ ଭକ୍ତିରସ ମଦ ଦେଖ ଯେ । ୧୭ ।

ମଧୁସୂଦନ ପାଦ ବୃକ୍ଷ ପୁଣ । ଧର୍ମ ଯାର ମୂଳ ସେ ବଡ଼ଗୁଣ । ବେଦ ତାହାର ସ୍କନ୍ଧ ବୋଲି ଜାଣ । ପୁରାଣ ଶାଖା ରହିଛନ୍ତି ହୋଇଣ ଯେ ଯଜ୍ଞ ସେ ହେଲା କୁସୁମ ଯେ । ସେ କୁସୁମରୁ ଏ ମଦକୁ ଭିଅଣ ଯାଇ ସାଧକ ବସନ ଯେ । ୧୮ ।

ସେ ମଦ ଅଣସ୍ୱାଦୀ ହୋଇଣ । ଶିବ ବ୍ରହ୍ମାଦି ସେ ଋଷି-ଗଣ । ମହାଜନ ଧ୍ୟାୟୀ ପିଅନ୍ତି ପୁଣ । ହୋଇ ରହିଲେ ସେ ତହିଁ ବଣ୍ଟାନ ସେ । ଯୋଗ କର୍ମ ଜ୍ଞାନ କରି ଯେ । ଅସମ୍ଭ ହୋଇଣ ରହି-ଲେ ସେ ପୁଣ ସେହି ବୃକ୍ଷମୂଳ ଧରି ଯେ । ୧୯ ।

ସଂସାରକ୍ଷୁଧା ତୃଷା ଦୂର ମଣି । ଯୁକ୍ତି ସଙ୍ଗେ ଭକ୍ତିଜଳକୁ ଆଣି । ମୂଳକଷଣ୍ଡ ତହିଁ ଦେଇ ପୁଣି । କାର୍ତ୍ତି ଦାସ ମିଶାଇ ତା ସେବନ ସେ । ହରିଙ୍କି ତା ସମର୍ପିଲେ ଯେ । ପିଇଣ ସେ ଜଳ ଖାଇ ମୋକ୍ଷ ଫଳ ତରତ୍ତାଳକୁ ପ୍ରହିଁଲେ ଯେ । ୨୦ ।

ମାନ ଅଭିମାନ ମୃଗକୁ ମାରି । ମାଂସ ପକ୍କ କରନ୍ତି ସେ କସ୍ତୁରି । ଉପକାର ଘୃତ ଆଦ ହଳଦୀ । ମନ୍ତ୍ର ମସଲା ତହିଁ ସଙ୍ଗେ ଭେଦ ଯେ । ଗନ୍ଧ ଲବଣ ସେ ଦେଇ ଯେ । ଅନନ୍ୟେ ଭୁଞ୍ଜନ୍ତି କରିକି ଧ୍ୟାଇଣ ପ୍ରେମେ ବଣଦେବ ସ୍ତୁହିଁ ଯେ । ୨୧ ।

ଲକ୍ଷ୍ମୀ ପଦାର୍ଥରେ କର୍ମ ପେଷ୍ଟ । ଯାହିଁ ଦେଖିଲେ ସେ ସଂସାର-ଯାତ୍ର । ମନକୁସୁମ ସୁବାସ ଦାୟକ । ଏହା ହୃଦୟେ କରିଣ ବିବେକ ଯେ ଭଜଣ ରହିଲେ ସେହି ଯେ । ସେହି ଜଗଦାତ୍ମା ବ୍ରହ୍ମ ସ୍ୱରୂପଣ ଆତ୍ମେ ପାଇବା ଯେ କାହିଁ ଯେ । ୨୨ ।

ସେହୁ ହରି ପଦ ପାଇବା ପାଇଁ । ବ୍ରହ୍ମାଦ ଲୋକନ୍ତ ପାଆନ୍ତ ନାହିଁ । ନାରଦେ ଖୋଜଣ ସ୍ତୁତର ହୋଇ । ନୃତ୍ୟ କଲେ ବୀଣାନାଦ ବଜାଇ ଯେ । ଭ୍ରମିଲେ କିପୁର ମଣ୍ଡ ଯେ । ଅମ୍ଭେ ତନ୍ତ୍ରଲେ ବ ହେବ ଏହୁ-ସ୍ତୁଲେ ବୃଥାରେ ହେଉଛୁଁ ଦହ୍ଣ ଯେ । ୨୩ ।

ଏଥି ଉତ୍ତାରୁ ମୁଁ ଦ୍ୱିତୀୟ ମଦ । ବର୍ଣ୍ଣନା କରଇଁ ଶୁଣ କୋବିଦ । ନାମ ତାର ଅଟଇ ମାୟାମଦ । କେମନ୍ତ ପ୍ରସ୍ତୁତ ହେଲା ସେ ଭେଦ ଯେ । ମାଦକ ଯାହା ଅଭେଦ ଯେ । ସେହି ମଦ ପିଇଣ ଯେ ସଦା-କାଳେ ଲଭୁଥାଅ ସୁଖ ବୋଧ ଯେ । ୨୪ ।

ମଧୂକା ନାମକ ବୃକ୍ଷକୁ ଦେଖ । ସଂସାର ଯା ମୂଳ ଦେଖ ପ୍ରତ୍ୟକ୍ଷ । ସଂସ୍କାରସ୍କନ୍ଧ ଶୋଭା ଯା ଅଲେଖ । ସଂସିଦ୍ଧ ସଂସୃଷ୍ଟି ଶାଖାକୁ ଯୋଖ ଯେ । ସଂକଳ୍ପ ଅନ୍ଧକୁସୁମ ଯେ । ଏ କୁସୁମରୁ ଏ ମଦକୁ ଉଅଣ ମାଦକ ଯା ଅନୂପମ ଯେ । ୨୫ ।

ମଧୁ ପ୍ରସ୍ତୁତ୍ବର ସମ୍ବାଦ ଯେତେକ । ସର୍ଜନାକୁ ବେଦପଢ଼ ନାୟକ । ସକଳ ମନୁଷ୍ୟମାନଙ୍କ ପାଇଁ । ମାୟାମଦ ତାହା ଦେବାର ଧ୍ୟାୟି ଯେ । ଜଗତ ବଶ୍ୟ ଲକ୍ଷି ଯେ । ବାସୁଦେବ ମଦ ଭଅଣ କରତା ଜଗଦ୍ କ୍ଷୋଭକ କର୍ମ ଦେଖି ଯେ । ୨୬ ।

ଜଗତୁ ପାଣ୍ଡ ଉତ୍କ୍ଷିପ୍ତ ସେ କଲେ । ପାଣ୍ଡ ଜାଣି ମଦ ସଜ୍ଜ ବସିଲେ । ଲୋଭ ଇନ୍ଧନ ସେ ତହିଁ ଖଞ୍ଜିଲେ । ଅଗମ ଅଗ୍ନି ତହିଁ ଲଗାଇଲେ ଯେ । ଦାବାଗ୍ନି ସେ ପ୍ରଜ୍ୱଳିତ ଯେ । ଶୋକ, ମୋହ, ଜଳ ତହିଁ ପୂରାଇଲେ ଗ୍ରାବ ତହିଁ ସେ ଅନନ୍ତ ଯେ । ୨୭ ।

ସଂକଳ୍ପ ଅନ୍ଧ ତହିଁ ପୂରାଇଲେ । ମାୟାକା ମଦ ତହିଁ ଜାତ କଲେ । ସେ ମଦ ସୁମନା ହେବାକୁ ଧାୟି । ସ୍ନେହରସ ପ୍ରୀତିଦରେ ମିଶାଇ ଯେ । ପ୍ରିୟମାଣ ମଦ ହେଲା ଯେ । ଦଣ୍ଡକର୍ମୀ ଭୂତାତ୍ମା ସେ ଗଢ଼ିଥିବା ଶୁଣ୍ଡି-ଯାକେ ଭଖାଗଲା ଯେ । ୨୮ ।

ମଦନରସ ପ୍ରେମ ମିଶାଇଲେ । ବାସନା ଉଦ୍‌ଖଳ ଭୃମଣ୍ଡଳେ । ସେହୁ ମଦ ବାସନା ଯେ କପଟ । ମୋହିତ କରେ ମାୟାମୂର୍ତ୍ତି ଧର ଯେ । ଧନ୍ୟ ସେ ରୂପ ବିକଟ ଯେ । ମାୟାସାଗର ତହୁଁ ସେ ପଣ୍ଡିତଙ୍କ ଗ୍ରହି ଦେଖ କଳ ଘଟ ଯେ । ୩୦ ।

ବରଚରକାଣ୍ଡ ସେ ବାସୁଦେବ । ଉଭୟିକ ଉଣାଚଲେ ଭୂଦେବ । ସୃଷ୍ଟି ବାଞ୍ଛା ହେଲେ ସେ ପ୍ରଜାପତି । ଭୂମି ଗନ୍ଧ ତାଙ୍କ ହୃଦୟ ଗତି ସେ ବହ୍ନଲତ ଦବାଗ୍ନିତ ଯେ । ମାୟା ରସେ ମଣ୍ଡି ଜ୍ଞାନ ଗନ୍ଧ ହଜ ଘଟ ସଙ୍କଳାରେ ତୃପ୍ତି ଯେ । ୩୧ ।

ବିଭୂଷି ଦେଖି ହୋଇଲେ ସେ ତୋଷ ।ବାସୁଦେବ ତହୁଁ କରନ୍ତି ଘୋଷ । ହେଥ ଶିବ ଏହୁ ଯେ ମାୟାରସ । ମନ୍ଦେଶ କଲେ ତହିଁ ରେ ବାସ ଯେ । କରନ୍ତି ଏହା ପ୍ରକାଶ ଯେ । ବରସ ମଦଲୁ କ ପଞ୍ଚ ସେ ଅମ୍ଭେ ହରିମଦରସେ ଅଣ ଯେ । ୩୨ ।

ମାନବଙ୍କ ପାଇଁ ଏ ମଦ ଖ୍ୟାତି । ଏହା ଖାଇ ଲଭିବେ ଅନାହତ । ମାୟାମଦରେ ସେ ହେବେ ମୋହିତ । ଅନାହତଜ୍ଞୋଳ ହୃଦୟଗତ ଯେ । ପ୍ରେମରେ ହେବେ ଗ୍ରଥିତ ଯେ । ସଂସାର ବିଷୟ ବ୍ରହ୍ମାଣ୍ଡ ଅଣୟୁ ଭୂମି ସଙ୍ଗେ ପରଚିତ ଯେ । ୩୩ ।

ପ୍ରାପତିଜ୍ଞ ହୋଇଣ ତୂମ୍ଭେ ଥାଅ । ଜ୍ଞାନ ଦାପ ଉର୍ଦ୍ଧି ଜାଳଣ ହଜ । ଶିବ ଏହା କହି ହୋଇଲେ ତୂନି । ବାସୁଦେବ କହୁଅଛନ୍ତି ପୁଣି ଯେ । ଅମ୍ଭେ ରହିବୁଁ ଯେ ସ୍ଥାନ ଯେ । ବ୍ରହ୍ମାଦି ଆଦି ର ସେତେ ଦେବଗଣ ହୋଇ ପାରୁନ୍ତିକ ଭିନ୍ନ ଯେ । ୩୪ ।

ଶଙ୍କର ହର୍ଷିତ ହୋଇ କହିଲେ । ତୁଷିତେଷ ତ ବ ଗରଣତଲେ । ଦେବ ମାନବେ ଯେ ସଚରାଚର । ସମସ୍ତେ ତୁମ୍ଭର ପାଦ କଙ୍କର ଯେ । ତମୋଘ୍ନ ହେ ମାୟାଧର ହେ । ମାୟା ପ୍ରକାଶିଣ ସଂସାର ସୃଷ୍ଟି ପୁଣି ତୁଅ ନାଶକର ହେ । ୩୫ ।

ଅତଳରେ ପ୍ରକାଶମାନ ହୋଇ । ସତସ୍ୱତରେ ବନ୍ଧାତ ତୋ ଦେହି । ପଦ୍ମଜାଭ ପଦ୍ମଚକ୍ଷୁ ତୁ ନୋହି । ଦେଖୁଥାଉ ମାୟାହାଟ ବସାଇ ଯେ । ସଂକଳ୍ପ ଭାବକୁ ପାଇ ଯେ । ସଂକ୍ଷିପ୍ତ ଯାହା ହେଉଥାଏ ତାହା ହେବାକୁ ତୁ ଭାବଗ୍ରାହୀ ଯେ । ୩୬ ।

ଅଭେଦ ଅଟଇ ତବ ଶରୀର । ଅର୍ଥିଜନ କରେ ପ୍ରଭୁ ଈଶ୍ୱର । ଯାହାଙ୍କ ଇଚ୍ଛା ତାହା ପୂରଣ କର । ଦିବ୍ୟଚକ୍ଷୁ ଦେଉ ମାନବଙ୍କର ଯେ । ତୋ କୀର୍ତ୍ତି ପାଢେ ଗୁଣେ ଯେ । ଅମର ହୃଦୟ ବୁଝି ସେ ପାଇବେ ତତ୍ତ୍ୱ ହେବେ ବ୍ରହ୍ମଜ୍ଞାନୀ ଯେ । ୩୭ ।

ତୋ ମାୟା ମଦକୁ ପିଇଣ ସେହୁ । ମାଦକ ବହଲେ ଦେଖିବେ ମହୀ । ସୃଷ୍ଟି ସର୍ଜ୍ଜନା ଭାବ ପ୍ରେମ ଲୁହି । ତୋ ଗୁଣ କୀର୍ତ୍ତନ ହୃଦୟେ ବହୁ ଯେ । ଜନମଣ୍ଡଳରେ ରହୁ ହେ । ଧର୍ମ ଜ୍ଞାନ ସଙ୍ଗେ ପ୍ରେମରସ ରଙ୍ଗେ ସଂସାର ଭାବକୁ ଗୁହିଁ ଯେ । ୩୭ ।

ଜୟ ପଞ୍ଚଶଙ୍ଖ ବଜାଅ ଥରେ । ଜୟନାଦ ଧ୍ୱନି ଶୁଭୁ ହିୟରେ । ପୂଲକ ଜାତ କରିଥ ମୋଠାରେ । ଦାସ ହୋଇଥିବ ସଦାକାଳରେ ଯେ । କହୁଣ ଜଗନ୍ନେତ୍ର ଯେ । ବାସୁଦେବ ପାଦେ ସାଷ୍ଟାଙ୍ଗେ ପଡଲେ ଉଠାନ୍ତି ପଦ୍ମଲୋଚନ ଯେ । ୩୮ ।

ବୃଷପତିଙ୍କର ଦେଖି ଏ ଦଶା । ଆଲିଙ୍ଗନ କରି କହନ୍ତି ଭାଷା । ତୁମ୍ଭଠାରେ ସଦାକାଳେ ମୋ ଆଶା । ତୁମ୍ଭେ ଅଟ ମୋର ହୃଦୟ ବାସ ଯେ । ଯାହା କହୁଲ ମନ୍ଦେଶ ହେ । ଅବଶ୍ୟ ମାନବେ ଦିବ୍ୟଚକ୍ଷୁ ହେବୁ ସବୁ କରୁଛୁ ପ୍ରକାଶ ଯେ । ୩୯ ।

ତତ୍ତ୍ୱ ଦିବ୍ୟଚକ୍ଷୁ ମାନବେ ହେଲେ । ମାନବେ ଜ୍ଞାନ ଚକ୍ଷୁ ସେ ପାଇଲେ । ମାୟାମଦ ପିଇ ଅଜ୍ଞାନ ହେଲେ । ପୁରୁଷଭୁକୁ ପାଇଣ ରହିଲେ ଯେ । ସ୍ୱବଶ ଅମରପୁରୀ ଯେ । ମନୁ ବର୍ଣ୍ଣସାଧ ଏ ମଦକୁ ଖାଇଣ ଗଲେ ଯଶ ଗାଇକରୁ ଯେ । ୪୦ ।

ଶାନ୍ତ ଭକ୍ତ ସେ କେମନ୍ତେ ପାଇବ । ସେହି ବିଷୟ ବୁଝି ନୋ
ମାନବ । ଜୀବର ଜନ୍ମ ମୃତ୍ୟୁ ତାହିଁ ଜାଣ । କର୍ମ ଅନୁସାରେ ଏ ଘଟ
ପୂର୍ଣ ଯେ । କର୍ମର ଲେଖକୁ ଦେଖ ଯେ । ଚକ୍ରଗ୍ରସ୍ତ ହୋଇ ସ୍ୱରୂପରେ
ଥାଇ ଗୁଣ ଯାହାର ଅଲେଖ ଯେ । ୪୧ ।

ଜନ୍ମାବଚ୍ଛିନ୍ନରେ ଯେତେ ବିଷୟ । ସବୁ ତାର ହୁଅଇ ପରିଚୟ ।
ଅନ୍ତଃକରଣେ ଭାବନ୍ତ ସେ ଯାହା । ତା ପାଖିରେ ଲେଖା ହୁଅଇ ତାହା
ଯେ । ବୁଝିବ ଏହା ସୁଜନେ ଯେ । ତାହାଠାରୁ ହୁଅନ୍ତି ଯେ ସ୍ପଷ୍ଟପାଇଁ
ଜଣାନ୍ତି ପ୍ରଭୁଙ୍କ ସ୍ଥାନେ ଯେ । ୪୨ ।

ଜନ୍ମ ଜନ୍ମାନ୍ତର ସୁକୃତ କ୍ରିୟା । ଧର୍ମଦ୍ୱାରେ ହେଉଥାଏ ସେ ଥୁଆ ।
ରଖିଥିବା ସୁକୃତ ଫଳ ଯେତେ । ସେହି ଫଳରୁ ଜନ୍ମ ଏହି ମର୍ତ୍ତ୍ୟେ
ଯେ । ଭକ୍ତ ହୋଇ ବୁଝିବ ହେ । ଏହା ଯେ ବୁଝିଣ ହୃଦୟେ ଧାଇଣ
ଲଗାଅ ସେ ପ୍ରେମଭାବ ଯେ । ୪୩ ।

ପ୍ରଭୁପାଦ ସ୍ମରିବା ଇଚ୍ଛାକାଶ । ମାନବରୂପେ ଜନ୍ମ ଏହି ପୁଷ୍ଟ ।
ଭାବକୁ ଜାଣି ତହିଁ ଚିନ୍ତାମଣି । ଶ୍ରୀକରଣ ଦିଅନ୍ତି ପ୍ରେମ ଜାଣି ଯେ ।
ଏ ବିଷୟ ସବୁ ବୁଝି ଯେ । ଭାଗ୍ୟବାନ୍ ପୁରୁଷ ହୋଇଣ ସଂସାରେ
ପ୍ରେମରସେ ପଡ଼ ମଜ୍ଜି ଯେ । ୪୪ ।

ମଦକ ଧାଇଣ ଏ ମଦ ପିଅ । ମଧୁବିଷ ଖାଇ ଅଜ୍ଞାନ ହୁଅ । ମଧୁ-
ପାପ ସଙ୍ଗେ ମଧୁକର ଗର୍ବ । ଲୋଭ ରସନେନ୍ଦ୍ର ଆନନ୍ଦେ ବନ୍ଦ ଯେ ।
ଅଯାତ୍ମକଙ୍କୁ ସେ ମାରୁ ଯେ । ସେହି ମାଂସକୁ ପରିପକ୍ୱ କରିଣ ଖାଅ
ସେ ଦେବା ସର୍ବସ୍ୱ ଯେ । ୪୫ ।

କ୍ରୀଡ଼ାଦ ସଙ୍ଗରେ କୀର୍ତ୍ତି ପିଣ୍ଡକ । ଖାଇ ବୁଲୁଥାଅ ଉତ୍ତମ ଦକ୍ଷ ।
ମୁଁ ଯେ ଅର୍ପିତ କହୁଅଛି ଏବେକ । ବୁଝାଇଲି ମୋର ହୃଦ ବିବେକ
ଯେ । ତୁମ୍ଭ ସଙ୍ଗେ ମୋତେ ରଣ ଯେ । ଭବଦାସ୍ୟ ହୋଇ ତୁମ୍ଭ ସଙ୍ଗେ
ଥିବି ଛଡ଼ିଣ ହୃଦୟ ଟେକ ଯେ । ୪୬ ।

ବସ୍ତୁ ଜାତ ହୃଦେ ହେଉଛି ମୋର । ଅବର ମଦ ଜ୍ୱର ହୃଦସ୍ଥିର । ନିଦାଘ ପଡିଲା ଅସି ମୋ ଶିର । ଏ କରବ କର ହେ ସୁଜନରଂ ହେ । ମହିମା ଯାର ଅପାର ଯେ । ଏ ମଦ ମାଦକ ଅତି ଭୟାନକ ସଂସାର ସେ କାରଖାର ଯେ । ୪୭ ।

ଯାହା ହେଉ ପଛେ ତା ଜଣାଇବ । ଦେଖ ଉଇବ କପଟ ତା ଛଡ଼ିବ । କାତର ହୋଇଣ ଜଣାଇ ଦେବ । ତୁମ୍ଭ ସଙ୍ଗେ ଯାଇଁ ଲୁଚ ରହିବ ଯେ । ହୋଇଣ ତୁମ୍ଭେ ସଦୟ ଯେ । ତୁମ୍ଭ ସଙ୍ଗେ ଥାଇଁ ପ୍ରେମଭାବ ଗ୍ରହିଁ ହୋଇଥିବ ମୁଁ ଅଭୟ ଯେ । ୪୮ ।

ଏ ମଦ ମାଦକେ ହେଲେ ଖଣ୍ଡିତ । ମୋ ଜନ୍ମ ହେବାର ହେବ ଯେ ବ୍ୟର୍ଥ । ପୁରୁଷାର୍ଥ ଯେବେ ଖଣ୍ଡଣ ଦେବ । ତେବେ ଏ ମଦରେ ଭ୍ରାନ୍ତ ହେବ ଯେ । ବୁଧଜନେ ଏହା ବୁଝ ଯେ । ମୁଁ ଅଟେ ବାଳକ ତ ଦେଖି ନାୟକ ଲଦଅଛ ମୁଣ୍ଡେ ବୋଝ ଯେ । ୪୯ ।

ଯଦି ଲଦିଅଛ ମୁଣ୍ଡରେ ବୋଝ । ଜୋହିବ ତହୁଁ କ ମୁଁ ଦୃଢ଼ବୀର୍ଯ୍ୟ । ଯାହା ହେଉ ପଛେ ହେଉଛି ଠିଆ । କରପତ୍ର ଯୋଡି ଜଣାଏଁ ତାହା ଯେ । ପର୍ଯ୍ୟନ୍ତ ନାହିଁ ତାହାର ଯେ । ଯାହା ଜାଣିଅଛି ତାହା ମୁଁ କହୁଛି ରହିଣ ତୁମ୍ଭ ଛାମୁରେ ଯେ । ୫୦ ।

ପର୍ବାବସାନ କରିବା ପାଇଁକି । ପତ୍ରିକା ପଢ଼ିଲାପରି ଏହି କି । ଅଭି-ମାନ ମଦ ଉତ୍ପତ୍ତି କଥା । ତାହା ଶୁଣିବାକୁ ଟେକ ଯେ ମଥା ଯେ । ଜନ୍ମ ଯେପରି ହୋଇଛି ଯେ । ସଂଶୟ ଫିଟାଇ ସବୁ କହିବଇଁ ଏବେ ମୁଁ ଠିଆ ହେଉଛି ଯେ । ୫୧ ।

ଶୁଣ ସୁଜନେ କର୍ଣ୍ଣ ମନ ଦେଇ । କାମ ନାମକ ବୃକ୍ଷ ଯେ ଅଛଇ । ମନୁମୂଳ ବୋଲି ହୃଦେ ବଢ଼ିର । ଲୋଭ ସ୍କନ୍ଧ ଯାର ମଦା ଅଙ୍କୁର

ଯେ । ମୋହ ନାମକ ଯେ ଶାଖା ଯେ । ମଦପଙ୍କରେ ସେ ଶୋଷ୍ଣ ବିକାଶୁଛି କୁସୁମ ତା ଅଣଲେଖା ଯେ । ୫୨ ।

ସେ କୁସୁମର ନାମ ଯେ ମତ୍ସର । ବୃକ୍ଷରୂପ ଦେଖ ସେ ଭୟଙ୍କର । ସେହି ବୃକ୍ଷ ଦେଖି ସେ ବେଦବର । କୁସୁମ ସଞ୍ଚୟ କଲେ ଅପାର ଯେ । ଅଭିମାନ ମଦ ପାଇ ଯେ । ଏ ମଦମାଦକ ଅଛି ଭୟାନକ ଜୈପୁର ଦେବ ଏ ଦନ୍ଥ ଯେ । ୫୩ ।

ବଂଶବାଦନ ଭୁବରେ ବସିଲେ । ବୈରାଗ୍ୟ ଯନ୍ତ୍ରକୁ ତହିଁ ସ୍ଥାପିଲେ । ମହାବ୍ୟାଧି ନାମକ କାଷ୍ଠ ଦେଲେ । କାଳାଗ୍ନି ତହିଁ ଜାଳଣ ସ୍ଥାପିଲେ ଯେ । ମଦ ବାନ୍ଧିବାର ପାଇଁ ଯେ । ଦଇତ୍ୟାରିଙ୍କୁ ସେ ଅଦ୍ଭୁତ କରଣ କହନ୍ତି ସେ ବେଦପାଇଁ ଯେ । ୫୪ ।

ତାମସିମାନଙ୍କ ପାଇଁ ଏ ମଦ । ଦାନବଗଣଙ୍କ ଜାଣ ସେ ସ୍ୱବ । କାଳାନ୍ତ୍ରକ ଜଳକୁ ପୂରାଇବ । ମଦ୍ୟ କି କୁସୁମେ ମଦ ରାନ୍ଧିବ ଯେ । ଏହା ଶୁଣି ଦଇତ୍ୟାରି ଯେ । ବ୍ରହ୍ମାଙ୍କ ଆଜ୍ଞା ପାଳଣ କରିକରି ମଦକୁ କଲେ ଉଆରି ଯେ । ୫୫ ।

ବିସ୍ମିତ ହେବାର ପାଇଁ ସେ ହରି । ବିନାଶକ ବସ୍ତ୍ର ଲମ୍ଭକୁ ଧରି । ବିମୋହିତ ହରନ୍ତି ମଦ ହେଲା । ବିମାର୍ଗ ବାସନା ଉଦ୍ଧଟିଗଲା ଯେ । ମହାଭୟାନକ ମଦ ଯେ । ଏ ମଦ ଖାଇଲେ ମାଦକ ହିଲେ ଭୁବନରେ ହେବ ବାଦ ଯେ । ୫୬ ।

ନର୍ମିତ କଲେ ମଦ ଅଭିମାନ । ନିବର୍ତ୍ତକ ହେବାକୁ ତାସ୍ତ୍ରୁଣ । ଶିବଙ୍କୁ ସମର୍ପି ଦେଲୁ ଯେ ତାହା । କାଳାନଳ ମଦ ନ ଦେଖୁ ଏହା ଯେ । ଭାବଣ ସେ ହୃଷୀକେଶ ଯେ । ଶିବଙ୍କୁ ଅନାଇଁ ହନୁଷନ୍ତ୍ର ତହିଁ ହୋଇଣ ସେ ହସ ହସ ଯେ । ୫୭ ।

ଭୂତେଶନାଥ ଏ ମଦକୁ ଦେଖ । ମହା ପ୍ରଜ୍ୱଳିତ ରୂପ ଅଲେଖ । ପ୍ରଳୟକୁ ଏହା ଶୋଷି ପାରିବ । ବୈକୁଣ୍ଠ ଏଥିରୁ ହେବ ଉଦ୍ଭବ ଯେ । ଅଜ୍ଞାନ ତମକୁ ଦେଉ ଯେ । ଦାନବଗଣଙ୍କୁ ଝୁଞ୍ଜାଇ ଏମଦ ସୃଷ୍ଟି ଥିବ ଭୂତ ପାଇଁ ଯେ । ୫୮ ।

ଶଙ୍କର ବୋଲନ୍ତି ହେ ଭାବଗ୍ରାହୀ । ଏହା ମୋ କପାଳେ ନ ନ ଅଛଇ । କାଳକୂଟ ଖାଇ ବାଯ଼ା ମୁଁ ହୋଇ । ଭ୍ରମୁଅଛି ହୃଦୟକୁ ମୁଁ ଦହି ଯେ । ଗୋଳ । ହୃଦୟ ବହି ଯେ । ଅଭିମାନ ମଦ ମହା ପ୍ରଜ୍ୱଳିତ ଏହା ଦେଉଛ କିପାଇଁ ଯେ । ୫୯ ।

ଶ୍ରୀହରି ବୋଲନ୍ତି ହେ ଦିଗମ୍ବର । ତମ ଗୁଣୁ ଜାତ ତୁମ୍ଭ ଶରୀର । ତୁମ୍ଭ ଅଂଶୁଁ ଜନ ହେବେ ଯେ ଜାତ । ସେହି ଖାଇ ମଦ ହେବେ ଅଚେତ ଯେ । ତହିଲେ ସେ କରଦ୍ଧରି ଯେ । ହର ବୋଲନ୍ତି ହେ ଶୁଣ ନାରାୟଣ ଅମ୍ଭେ ରଖିବୁଁ କିପରି ଯେ । ୬୦ ।

ଅମ୍ଭେ ରଖି ଅଚେତ ସେ ହୋଇଲେ । ଶୁଭ କି ନା ତୁମ୍ଭ ହୃଦୟ ସ୍ଥଳେ । ଯାକୁ ଦେଖି ବରଞ୍ଚି ତୁମ୍ଭେ ଭଜି । ଅମ୍ଭେ ଭଜିବୁଁ ନାହିଁ ଯେ କିପରି ସେ । ଏହା କହ ଯେ ଫିଟାଇ ଯେ । ତହୁଁ ନାରାୟଣ କହୁଛନ୍ତି ପୁଣ ଭୂତନାଥଙ୍କୁ ବୁଝାଇ ଯେ । ୬୧ ।

ଭୂତାତ୍ମା ନାମକ ସେ ଯେ ବିଷୟ । ତହିଁରେ ତୁମ୍ଭେ ନୁହ ପରିଚୟ । ସାତ୍ତ୍ୱିକ ରାଜସୀ ହେ ତାମସିକ । ତ୍ରିଗୁଣେ ସଂସାର ବିନାଶ ଦେଖ ଯେ । ସାତ୍ତ୍ୱିକମାନଙ୍କ ପାଇଁ ଯେ । ହରି ରସ ମଦ ମୋଠାରେ ରହିଲା ଦେଖ ହୃଦୟରେ ଧ୍ୟାୟି ଯେ । ୬୨ ।

ରାଜସି ମାନଙ୍କ ପାଇଁ ଯେ ମଦ । ମାୟାମଦ ତାହାକ ହରି ବାଦ । ବ୍ରହ୍ମା ରଖିଲେ ବରୁଣ ପ୍ରମୋଦ । ମାନବେ ଖାଇଲେ ସ୍ୱଭେ ଆମୋଦ

ଯେ । ଜ୍ଞାନ ଭକ୍ତି ତାଙ୍କୁ ଦେଲ ଯେ । ରାମସିଦ୍ଧ ମଦ ତାଏ ସେ ରଖିବ ଏ ବିଶ୍ୱସ୍ତ ଯେ ସ୍ଥଳ ଯେ । ୬୩ ।

ଶଙ୍କର ଶୁଣି ହେଲେ ସଙ୍କୁଚିତ । ଅଭିମାନ ମଦ ମୁଁ ରଖିବ ତ । ଦାନବେ ତାଇ ହେବେ ସେ ଅଜ୍ଞାନ । ରକ୍ଷା କରିବାକୁ ବରିବ ପୁଣ୍ୟ ଯେ । ଏହା ଶୁଣି ନାରାୟଣ ଯେ । ବୋଲନ୍ତି ହେ ଶିବ ପ୍ରସ୍ତୁତ ମୂ ତାଙ୍କ ନାଶ କରିବ ହେ ପୁଣ ଯେ । ୬୪ ।

ଶିବ ସ୍ୱୀକାର କରିଣ ରଖିଲେ । ବରଷ୍ଟ ନାରାୟଣ ତହୁଁ ଗଲେ । ଏହା ଶିବ ତାହାକୁ ସମ୍ପାଦିଣ । ହୈମବତୀଙ୍କୁ ହେଁ ସେ ଛାଡଣ ଯେ । ଏହା ଦିଶ ରୁ ପାର୍ବତି ଲେ । ଅଭିମାନ ମଦ ଏହା ସେ ଅଟଇ ଭୟଙ୍କର ଦେଖ ଲେଖିଛ ଯେ । ୬୫ ।

ପାର୍ବତୀ ବୋଲନ୍ତି ହେ ଶୂଳପାଣି । ଯେ ଖାଇବ ହେବ ବହୁଳ ମତି । ଏହା ରଖିଲେ ଯେ ଅସୁର ଜାତି । ଶୁଦ୍ଧ ରହିବ କି ଅସୁର ମତି ଯେ । କହନ୍ତି ସେ ମହେଶ୍ୱର ଯେ । ସ୍ୱାର୍ଥ ଏଥିର ତୁ ବସ ଯାଣିବୁ ଏହା ବରିବ ତୁ କର ଯେ । ୬୬ ।

ଭୂତାତ୍ମା ବୋଲିଣ ଏକଇ ବ୍ରହ୍ମ । ତ୍ରିମୂର୍ତ୍ତି ହୋଇକୁ ଦେଖା ପ୍ରତ୍ୟକ୍ଷ । ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯେ ପୁଣି । ତହୁଁ ରୁ ସର୍ବଜୀବ ଏହି ଅବନୀ ଯେ । ଅଂଶାଦି ସ୍ୱ ଅନୁସାରେ ଯେ । ଉତ୍ପତ୍ତି ପ୍ରଳୟ କରିବା ପାଇଁ ତ ଦେଖ ଏ ମଦ ବେଭ୍ରିଲେ ଯେ । ୬୭ ।

ବିଷ୍ଣୁଙ୍କ ଅଂଶରୁ ଜାତ ଯେ ଜନ । ଦେବତା ବୋଲିଣ ତାହାକୁ ମଣ । ବ୍ରହ୍ମାଙ୍କ ଅଂଶରୁ ମାନବ ଜାତ । ମହାବ୍ରହ୍ମଜ୍ଞାନୀ ସେହୁ ହେବ ତ ଯେ । ଅବଶ ଦାନବ ହେତୁ ଯେ । ଅସୁର ଅଂଶରୁ ଜାତ ସେ ହୋଇବେ ସେହୁ ଖାଇବେଟି ଏହୁ ଯେ । ୬୮ ।

ପାର୍ବତୀ ବୋଲନ୍ତି କହିଲ ସତ । ଅଷ୍ଟୋର୍ଦ୍ଧ୍ୱ ମଣ୍ଡଳ ଏହା ମୁହିଁ ତ । ଦେବ ମାନବ ରାକ୍ଷସ ତ ଗଲେ । ଅବର ଜୀବାଦି ସେ ତ ଖାଇଲେ ଯେ । କପଟ ଉତ୍ପନ୍ନ ହେଲେ ଯେ । ହସି ଶୂଳପାଣି ଶୁଣ ଲୋ ପାର୍ବତୀ କହନ୍ତି ଏହା ତୋ ଭୁଲେ ଯେ । ୬୯ ।

ପ୍ରଥମ ମଦ ମାନବେ ଖାଇବେ । ସେ ବ୍ରହ୍ମ ଜୀବ ସଙ୍ଗେ ମିଶି ଯିବେ । ବ୍ରହ୍ମାନନ୍ଦ ସଙ୍ଗେ ଆନନ୍ଦ ବଢ଼ । ଦେଖିବେ ସଂସାର ଆନନ୍ଦ ହୋଇ ଯେ । ଦ୍ୱିତୀୟ ମଦ ଉଚ୍ଛିଷ୍ଟ ଯେ । ସ୍ଥାବର ଜଙ୍ଗମ ପଶୁ ପତଙ୍ଗାଦି ଖାଇ ଭ୍ରମୁଛନ୍ତି ଦେଖ ଯେ । ୭୦ ।

ଜୀବାଦି ମଧ୍ୟେ ନର ଜନ୍ମ ସାର । ମାନବ ଦାନବ ଦୁଇ ପ୍ରକାର । ମାନବଙ୍କ ଶୁଦ୍ଧ ଦ୍ୱିତୀୟ ମଦ । ହେବାରୁ ତହିଁରେ ଯେ ଆତ୍ମ ବୋଧ ଯେ । ଜ୍ଞାନ ତତ୍ତ୍ୱ ପାଉଛନ୍ତି ଯେ । ଅବର ଦାନବ ପାଇଁକି ଏ ମଦ ଭକ୍ଷଣ କରିଅଛନ୍ତି ଯେ । ୭୧ ।

ପାର୍ବତୀ ଶୁଣି ହରହାସେ କହିଲେ । ତଏ ଏହା ସବୁ କଶ୍ମର ହେଲେ । ତଏ ସମ୍ଭାଳ ଏ ସକଳ ମଦ । କପରି କପ୍ରୁ ସେ ତତ୍ତ୍ୱବୋଧ ଯେ । ହେତୁ କହ ତ୍ରୈଲୋକନାଥ ହେ । ଶୁଣିଲେ ସଂଶୟ ମୋର ନାଶ ଯିବ ଜନ୍ମ ମୋର ହେବ ସାର୍ଥ ଯେ । ୭୨ ।

କହୁଛନ୍ତି ବୃଷପତି ତହିଁକି । ଯେବେ ବୁଝାଇଲେ ବୁଝ କାହିଁ କି । ଉତ୍ପତ୍ତି ପ୍ରଳୟ ସଂସାର ଜାଣ । ତହିଁ ପାଇଁ ଏହା ସବୁ ଭକ୍ଷଣ ଯେ । କହନ୍ତି ସେ ନାରାୟଣ ଯେ । କହଇ ସଙ୍ଗରେ ମୁଁ ଯେ ତହିଁ ଥାଏ ତାଙ୍କ ଆଜ୍ଞାକୁ ପାଳଣ ଯେ । ୭୩ ।

ମୋକ୍ଷଦାତା ପ୍ରଭୁ ସେ ନରହରି । ସଚରାଚର ସେ ଅଧିକାରୀ । ସଂକଳ୍ପଦାତାଙ୍କୁ ସେ ବଳ ଜାଣ । ସଂହାରକ ଜାଣି ଅଦେଶ ପୁଣ ଯେ । ଦଅନ୍ତି ସେ ଭଗବାନ ଯେ । ବ୍ରହ୍ମା ତାହାଙ୍କ ଆଜ୍ଞାରୁ ସେ ଯେମନ୍ତ ଜୀବାଦି କଲେ ଭକ୍ଷଣ ଯେ । ୭୪ ।

ଦ୍ଵିଜମଦ ଜୀବାଦଙ୍କର ପାଇଁ । ସ୍ଵଦଣ ଏସବୁ ସେ ଗ୍ରବଗ୍ରାହୀ । ପ୍ରଥମ ମଦକୁ ନଜେ ରଖିଲେ । ଦ୍ଵିତୀୟ ମଦ ସେ ବ୍ରହ୍ମାଙ୍କୁ ଦେଲେ ଯେ । ତୃତୀୟ ମଦଟି ଏହୁ ଯେ । ଏହା ଅମୃ ସ୍ଵର୍ଗେ ପଡଣ ଅଛଇ ଶୁଣିଲୁଁ ବ ପ୍ରାଣସହୁ ନୋ । ୭୫ ।

ଶୁଣି ବୈମବଗା ଚହୁଁ ଦ୍ଵସିଲେ । ସଂଶୟ ରହିଲା ହୃଦସ୍ଥଲେ । ମାନବେ ଜ୍ଞାନ ଚକ୍ଷୁକୁ ପାଇଲେ । ଦାନବେ ବସ ପାଇଣ ରହିଲେ ଯେ । ବ ଦେବ ତାହାଙ୍କୁ ପୁଣ ଯେ । କେଉଁ କେଉଁ କାର୍ଯ୍ୟେ ନିମଗ୍ନ ରହିବ ତାହା କହ ପଞ୍ଚାନନ ଯେ । ୭୬ ।

ପୁଣି ଶଙ୍କର ଚହୁଁ ସେ ବୋଲନ୍ତି । ଶୁଣ ଲୋ ପାର୍ବତୀ ବଶ୍ୟର ମତ୍ତ । ପ୍ରଭୁଙ୍କ ଅଜ୍ଞା ମୁଁ ପାଇଥିଲି । ଦାନବଙ୍କୁ ଅଜ୍ଞାନ ଚକ୍ଷୁ ଦେଇ ଯେ । ଦେଖିବ ସଂସାର ମୂର୍ଖ ଯେ । ମାନବଙ୍କ ସଙ୍ଗେ ବାଦ ଭଅଇବେ ଅଭିମାନମଦ ପିଇ ଯେ । ୭୭ ।

ଆବର ବୃଷଯ୍ଯ ଏବେ ତୁ ଶୁଣ । ମକ୍ତି ଦେବା କାର୍ଯ୍ୟ ସେ ନାରାୟଣ । ଉତ୍ପତ୍ତିବର୍ଗଙ୍କୁ ସେ ବେଦପତ୍ତ । ପ୍ରଳୟ କରଇବା କାର୍ଯ୍ୟ ମୋ କାଢ ଯେ । ଏପରି ବଭାଗ ପାଇ ଯେ । ଏ ତିନ କାର୍ଯ୍ୟଙ୍କୁ କରିବା ପାଇଁକ ଏ ମଦ ଅଛୁଁ ଭଅଇଁ ଯେ । ୭୮ ।

ଯାହା ସ୍ଥାଇରେ ଜୀବ ଜାତ ହେବ । ଜନ୍ମିଥିବା ଅଂଶେ ମଦ ପିଇବ । ସେହୁ ମଦଚ୍ଛଣ ହୃଦସ୍ଥେ ଥିଲ । ଯାହିଁ ଦେଖିବ ମାୟା ମର୍ତ୍ତ୍ୟପୁରୀ ଯେ । କହିଲ ଏହା ବୁଝାଇ ଯେ । ଶୁଣ ଲୋ ପାର୍ବତୀ କହିଲ ତୋ କାଢ ମଦ ରଖ ହୃଦେ ଧ୍ୟାୟ ଯେ । ୭୯ ।

ଶଙ୍କରଙ୍କୁ ଗୃହେ ସେ ମହାସତୀ । ସବୁ ବୁଝାଇଲ ଦେ ବୃଦ୍ଧଯତ୍ତ । ବଲଣ୍ଡ ଖାଇଲେ ଯେ କେଉଁ ମଦ । ସେତ କହଣ ମୋ ହୃଦସ୍ଥ ବୋଧ

ଯେ । ଆବର ଉନ୍ମାଦଗଣ ଯେ । କେହିଁ ମଦ ଖାଇ ଅଚେତ ହୁଦନ୍ତି ଝଗଡ଼ଉ କଳହ ତା ପୁଣ ଯେ । ୮୦ ।

ହସି କହନ୍ତି ଶମ୍ଭୁ ଦିଗମ୍ବର । ପାର୍ବତୀ କୁତୂହଳ କରୁ ଅପାର । ତାହା ବୃତ୍ତାନ୍ତ କହୁଅଛୁ ଶୁଣ । ଦେବତାମାନେ ଭକ୍ତ୍ୟ ହେ ହୋଇଣ ଯେ । ଅଣ୍ରାପ୍ତି ସେ ହୋଇ ମଦ ଯେ । ଦାନବେ ତଥି ସଙ୍ଗରେ ଯେତେ ଛନ୍ତି ଅଭିମାନ ମଦେ ବୋଧ ଯେ । ୮୧ ।

ସ୍ୱୟଂ ନାରାୟଣ ହର୍ତ୍ତା ସେ ଜାଣ । ସେ ମଦ ପିଇବେ କେଉଁ କାରଣ । ସବୁ କର୍ତ୍ତା ସେହୁ ଅନନ୍ତହର । ତାଙ୍କ ହସ୍ତରେ ଏ ସବୁ ଭଅଉ ଯେ । ଜୀବନ ମୁଅ ତୁ ସତା ଯେ । ବ୍ରହ୍ମା ମାୟାମଦ ପିଇଣ ଅଛନ୍ତି ସୃଷ୍ଟି ସର୍ଜ୍ଜନାରେ ତୃପ୍ତି ଯେ । ୮୨ ।

ଆମ୍ଭେ ହରରସ ମଦକୁ ଖାଇ । ଭମୁଆନ୍ତୁ ମହାନନ୍ଦକୁ ବିହି । ସପ୍ତ ପ୍ରଳୟ ସବୁକାଳ ରହିଁ । ଦାସ ହୋଇ ପ୍ରହ୍ଲାଦକୁ ଧ୍ୟାୟି ଯେ । ସୁବନା କରି ଯାଇ ଭୁହ ଯେ । ଏ ସବୁ ବଶମ୍ଭ ବୃତ୍ତାନ୍ତ କହିଲ ସାବ ରହୁ ହୃଦେ ଧ୍ୟାୟି ଯେ । ୮୩ ।

ପାର୍ବତୀ ଶମ୍ଭୁଁ ସେ ମଦକୁ କେଲେ । ଅନନ୍ତାଣ୍ଡବେ ମନକୁ ରଖିଲେ । କୁଅନ୍ତ୍ରେ ଘୋଟିଲ ସେ ମହାଜ୍ୱାଳା । ହୃଦୟ ହୋଇଗଲା ଶମ୍ଭୁ କଳା ଯେ । କାଳୀ ନାମକୁ ବହିଲେ ଯେ । ମହା ବର୍ଣ୍ଣମୂର୍ତ୍ତି ପ୍ରକାଶ ହୋଇଲ ତ୍ରିପୁରକୁ ନଖାଇଲେ ଯେ । ୮୪ ।

ଷଡ୍ଭୁଜ ରହୁଁ ନାଚ ସେ କଲେ । ଏକ ହସ୍ତରେ ସେ ମୁଣ୍ଡ ଧଇଲେ । ଆରେକ ହସ୍ତରେ ଖଡ୍ଗକୁ ଧର । ବର ଅଭୟ ଅନ୍ୟ ହସ୍ତେ କର ଯେ । ଲୋଲଜିହ୍ୱା ବଢ଼ାଇଲେ ଯେ । ମୁଣ୍ଡମାଳ ଗଳାରେ ସେ ଲମ୍ବାଇଣ ତ୍ରିପୁରକୁ ହାସ ଦେଲେ ଯେ । ୮୫ ।

କଲକା ଯୁବକାଳେ ସେ ମା କାଳୀ । ମହାଦେବ ଶବ ଉପରେ ଏକ । ନୃତ୍ୟ କଲେ ଭୟଙ୍କର ରୂପରେ । କୁଣ୍ଡଳ ମୁଣ୍ଡଲ କର୍ଣ୍ଣଦେଶରେ ଯେ । ମହା ଭୟଙ୍କର ମୂର୍ତ୍ତି ଯେ । ସେହି ଦୁର୍ଗକୁ ନାଶନ ସେ ପାଇଁକି ଦୁର୍ଗା ନାମ ପାଇଛନ୍ତି ଯେ । ୮୬ ।

ଦେଖ ଏ ମଦ ପ୍ରତାପ ଏମନ୍ତ । ବୁଧଜନେ ଏଥି ହୋଇ ସ୍ତମ୍ଭିତ । ଏହା ଅଗ୍ନିରୂପ ହୃଦୟଗତ । ଏହା ଖାଇବାକୁ ଯେ ବୁଝି ହୁଅ ଯେ । ଖାଅ କାମବୃକ୍ଷ ଫଳ ଯେ । ଅଧଃପତନ ଫଳ ଜାଣି ଯେ ପୁଣ ଖାଇ ସେ ଦୁଃଖ ବଢ଼ଲ ଯେ । ୮୭ ।

ରାବଣେଶ୍ୱର ଖାଇଣ ଏ ମଦ । ଶ୍ରୀରାମଚନ୍ଦ୍ର ସଙ୍ଗେ କଲା ବାଦ । ମହା-ପ୍ରତାପୀ ବିଖ୍ୟାତ ସେ ପୁଣି । ବର ଦେଇଥିଲେ ସେ ପଦ୍ମଯୋନି ଯେ । ତପସ୍ୟା ସେହି ତେଜରୂପ ଯେ । ସ୍ୱବଂଶ ହରାଇ ଗଲା ସେ ଯେ ପୁଣି ସ୍ୱର୍ଗ ଦେଇ ବ୍ରହ୍ମାଦର୍ପ ଯେ । ୮୮ ।

ଦୁର୍ଯ୍ୟୋଧନାଦି ସେ ମହାରାଜନ । ଅଭିମାନ ମଦ ପିଇଲେ ପୁଣ । ସ୍ୱବଂଶ ହରାଇ ନାଶ ସେ ହେଲେ । ବୁଝାଇ କହିଲି ତୁମ୍ଭ କୁଳେ ଯେ । ଘୃଣ୍ୟତରେ ଲାଗେ ଭୟ ଯେ । ସଜ୍ଜନଗଣ ବୁଝାଇ କହିଲି ଇଚ୍ଛା ଅନୁସାରେ ପଥ ଯେ । ୮୯ ।

ତୁମ୍ଭ ଅଗ୍ରତରେ ମୁହିଁ ବାଳକ । ପ୍ରେମ ଦେଇ ତୁମ୍ଭ ପାଖରେ ରଖ । ଜଣାଇଲି ଯାହା ଜାଣିଣ ଥିଲି । ନମସ୍କାର କରି କହ ମୁଁ ହେଲି ଯେ । ନ ଧରିବ ମୋର ଦୋଷ ଯେ । ଅଜ୍ଞାନଭାବରେ ଏହା ମୁଁ କହିଲି ଜଣାଏ ବହାଶ୍ରି ଦାସ ଯେ । ୯୦ ।

---

## ସ୍ତବ ଶ୍ଳୋକ ବ୍ୟାଖ୍ୟା ।

ଶ୍ରୀ ହରିପାଦରେ ନିବେଦନ କରେଁ ଶୁଣ ଅନ୍ତର୍ଯ୍ୟାମି ମୋ ଜଣାଣ । ତୁମ୍ଭ ଅନ୍ତ ପାଇଁ ନାହିଁ ଅଛି ଏହି ମାୟାମୟ ଏ ମର୍ତ୍ତ୍ୟଭୁବନ । ପ୍ରଭୁ ଅନନ୍ତ ହେ । ଗୁହାରି କରୁଛି ମୁଁ ନିରତ । ସ୍ୱଭାବେ ଅଚ୍ୟୁତ କେ କରେ ବ୍ୟକତ କେ କହିପାରେ ତୋ ଆଦିଅନ୍ତ । ୧ ।

ମାତଃ ସରସ୍ୱତି ଶୁଣ ମୋ ବଚନ ହେଉଛି ପ୍ରଣତ ତୁମ୍ଭଠାରେ । ଥରେ ତୁ ସୁଦୟା କର ମହାମାୟା ତୋ ଗୁଣ ଗାଉଛି ନିରନ୍ତରେ ।

---

ଅନ୍ନପୂର୍ଣ୍ଣା ମାତା ଓ ନାରାୟଣଙ୍କର ପଦପଦ୍ମରେ ଅଭ୍ୟର୍ଥନା କରେଁ ହେ ଅନ୍ତର୍ଯ୍ୟାମି ପୁରୁଷ ଅନନ୍ତଦେବ ଧାରଣକରି ଅନ୍ତର୍ଯ୍ୟାମି ସ୍ୱରୂପେ ମୋର ଅନ୍ତଃକରଣରେ ଯାହା ଘଟିଅଛି ତାହା ତ ଆପଣ ଜାଣିପାରନ୍ତି । ଏଣୁ ମୁଁ କର ସମ୍ପୁଟରେ ଠିଆ ହୋଇ ଜଣାଉଅଛି ମୋର ଜଣାଣ ଶୁଣିବା ହେଉ । ହେ ପ୍ରଭୁ ମୁଁ ଶରଣାଶ୍ରୟୀ ହୋଇ ନିବେଦନ କରେଁ ଅହୋ ! ଏହି ମାୟାମୟ ମର୍ତ୍ତ୍ୟଭୁବନ ଦୀନନାଥ ଏହା ଅନନ୍ତ ଅଟେ । ଏହା ଅନ୍ତ ପାଇବାକୁ ସମର୍ଥ ନୁହେଁ ଅଛି ଏଣୁ ମୁଁ ସନ୍ତତରେ ଜଣାଉଅଛି ଆପଣଙ୍କର ସ୍ୱଭାବ, ଗୁଣ, କାନ୍ତି, ଅଚ୍ୟୁତ ଓ ଆପଣ ଯାହାଁରେ ସଂଲଗ୍ନ ହୁଅନ୍ତି କିନ୍ତୁ ସର୍ବବ୍ୟାପକ ଆପଣଙ୍କର ଆଦି ବା ଅନ୍ତ ନୁହେଁ ଜାଣିପାରିବ ବର୍ଣ୍ଣନା କରିବାର ଯୋଗ୍ୟ ନୁହେଁ ଅଛୁ ଏଣୁ ଆପଣ ଅବ୍ୟକ୍ତରୂପ ।

ମା ! ସରସ୍ୱତି ମୁଁ ପ୍ରଣତ ହୁଏଁ ବା ପ୍ରଣାମ କରେଁ ତବ ଆଶ୍ରୟର ବଚନ ଶୁଣିବା ହେଉ ଯେବେ ବାରେ ସୁଦୟା କର ହେ ମହାମାୟା ତବ ଗୁଣ ସନ୍ତତରେ ଗାଉଛି ବା ଗାୟନ ବା ସ୍ତବରେ ଠିଆହେଲି ।

ଅଟଗୋ ବାଣୀଧାର । ପଦ ଦେଉଥିବୁ ତୁ ବିଚାର । ମୋ ହୃଦୟରେ ବସ ନିରନ୍ତରେ ବ୍ରହ୍ମସ୍ୱରୂପିଣୀ ହୋଇ କର ।୨।

ଏଥୁ ଅନନ୍ତରେ କୃଷ୍ଣ ଅଦେ ଧୀରେ କରୁଛି ଜଣାଣ ତୁମ୍ଭଠାରେ । ସଂସାର ଯେ ବୃକ୍ଷ ଏହା ଥରେ ଦେଖ ଫୁଟିଛି କୁସୁମ ବୃକ୍ଷପରେ । ଥରେ ଦେଖୁକର । କେଉଁରୂପେ ଯା ହୁଏ ପ୍ରକାର । ଦୁଇଗୋଟି ହୋଇ ଫୁଲ ପ୍ରକାଶଇ ବାଛି କରି ତାହା ଚିତ୍ତେ ଧର ।୩।

ତ୍ରିକୂଟଶିଖରେ ସେ ବୃକ୍ଷ ହୃଦରେ ଭାବ କରି ତାହା ଥରେ ଦେଖ । ତାହା ପତ୍ର ଡାଳ ହୋଇଛି ସକଳ ପ୍ରକାଶି ଅଛି ରୂପ ଅଲେଖ । ତାହ,

---

ମା ଥରେ ସୁଦୟା କର ଗୋ ବୀଣାଧାରି ମୋର ହୃଦୟରେ ସନ୍ତତରେ ତବ ବ୍ରହ୍ମରୂପିଣୀ ରୂପ ଧାରଣ କରି ମୋ କଣ୍ଠରେ ବସି ପଦକୁ ଫିଟାଇ ଦେଉଥିବୁ।

ଏଥୁ ଅନନ୍ତରେ ହେ ସଂସାରସ୍ଥ ବୁଦ୍ଧିଜ୍ଞ ସମାଜଗଣ ତବ ସମ୍ମୁଖରେ କିଛି ଅଂଶ ଜଣାଉଅଛି ତାହା ଶୁଣିବା ହେଉ ଦେଖନ୍ତୁ ମୁଁ କ୍ଷୁଦ୍ରବୁଦ୍ଧି-ଦ୍ୱାରା ସଂସାରକୁ ଗୋଟିଏ ବୃକ୍ଷ ଲକ୍ଷ କରେଁ ଏହା ଥରେ ଦେଖିବା ହେଉ ସଂସାର ବୃକ୍ଷରେ କି ସୌନ୍ଦର୍ଯ୍ୟ ଫୁଲ ଫୁଟିଅଛି ବନ୍ଧୁଗଣ କରନ୍ତୁ କେଉଁ ପ୍ରକାରରେ କି ସ୍ୱରୂପେ ପ୍ରକୃତ ହୋଇଅଛି ଆଉ ସେହି ଫୁଲ ଦୁଇ ଗୋଟି ହୋଇ ପ୍ରକାଶମାନ ହୋଇଅଛି ଭାଇମାନେ ଯାହା ମନକୁ ଯେଉଁଟା ପାଏ ଆପଣମାନଙ୍କର ମନୋଜ୍ଞପୂର୍ବକ ବୋଲି ନେଇ ଗ୍ରହଣ କରିବା ହେଉନ୍ତୁ ।

ହେ ! ବନ୍ଧୁଗଣେ ଆପଣ ବା ବୋଲିବେ ସେହି ବୃକ୍ଷ କେଉଁଠି ଅଛି ସତ୍ତ୍ୱ, ରଜ, ତମ, ଜଳ, ଅଗ୍ନି, ପବନରେ ଜଡ଼ିତ ହୋଇଥିବା ଯେଉଁ ପର୍ବତ ସେହି ପର୍ବତର ନାମ ତ୍ରିକୂଟ ସେହି ତ୍ରିକୂଟ ଶିଖରେ ସେହି ବୃକ୍ଷ ପ୍ରକାଶ ହୋଇ ଶୋଭାକୁ ଦେଖାଉଅଛି । ପ୍ରିୟ ବନ୍ଧୁ !

ଶୋଭୁ ବୁଢ । ପ୍ରକାଶ ହୋଉଛୁ ଏହୁ ପୃଥ୍ୱୀ । ହେତୁ କ୍ଷୀଣ କରି ସେ
ବୃକ୍ଷକୁ ଧରି ଭୋଗ କରି ରହ ଏହୁ ସିଦ୍ଧ । ୪ ।
ତ୍ରିକୂଟ ଶିଖରସ୍ଥାନ ଅଗୋଚର ତଥିପରେ ହର ଗୁଣ ଭାବ ।
ଗୁଣକୁ ଶ୍ରବଣ ହେଲେ ପଞ୍ଚାନନ ଅବ୍ୟକ୍ତ ହୋଇଲେ ଦେଖି ଛବ ।
ଚତୁଁ ବଦନସ୍ୱଂ । ଦେଖିଲେ ତ୍ରିକୂଟର ବ୍ୟବସ୍ଥା । ଋଷି ବେଦ ଗଲା
ଶେଷ ସେ ନୋହିଲା ଚତୁରାନନ ବସ୍ତୁମେଘୁ ଚନ୍ଦ୍ରା । ୫ ।

---

ତାହା ଥରେ ଭାବନାକରି ଦେଖିବା ହେଉ ଆପଣମାନେ ବୋଲିବେ ଇଣ୍ଡ୍ରାଗଛଟାଏ ନା ଭାଇ ତାହା ତ ନୁହେଁ । ତାହାପଲ୍ଲବ ଶାଖା ପ୍ରଶାଖା ସହାସହ ହୋଇ ପ୍ରକାଶିଅଛି ଯାହାର ରୂପ ଅଲେଖ ତାହାର ଶୋଭା ପ୍ରବୃଦ୍ଧିରେ ଏହି ପୃଥିବୀ ପ୍ରକାଶମାନ ହୋଇଅଛି ଭଦ୍ର ହେତୁ କ୍ଷୀଣ କରି ଏହି ଯାନପଦରେ ସେହି ବୃକ୍ଷକୁ ଧରି ଭୋଗ କରିବାନ୍ତ ହେଉନ୍ତୁ ॥

ସର୍ବ୍ବବୃନ୍ଦ ! ଉକ୍ତ ତ୍ରିକୂଟ ଶିଖରସ୍ଥାନ ଗୋଚର ହେବାର ଦୃଷ୍ଟି ଦେଖନ୍ତୁ ଯେଉଁ ତ୍ରିକୂଟ ଶିଖର ଗୁଣ କୀର୍ତ୍ତନ କରିବାପାଇଁ ଯୋଗେଶ୍ୱର ମହାଦେବ ଉପସ୍ଥିତ ହେଲେ ତାର ଗୁଣ କୀର୍ତ୍ତନ କରିବାର ଗୋଟିଏ ମୁଖରେ ନ ହୋଇପାରିବାରୁ ଅଉ ଚାରିଗୋଟି ମୁଖ ନୂତନ ପ୍ରକାଶ କଲେ ପୂର୍ବମୁଖ ମେଳି ପାଞ୍ଚଟି ହେଲା ତେବେସୁଦ୍ଧା ତତ୍ତ୍ୱମସି ହୋଇ ପାରିଲେ ନାହିଁ ପଞ୍ଚାନନ ବୋଲାଇଲେ ଅପାରିବାର ହେତୁରୁ ତ୍ରିକୂଟର ଛନ୍ଦ ଅନାଇ ଅବ୍ୟର୍ଥ ହୋଇ ରହିଲେ । ଯେଉଁକାଳେ ମହାଦେବ ଅପାରିବାର ଶୁଣିଲେ ବ୍ରହ୍ମା ଭାବିଲେ ମୁଁ ଚଉବଦନ ମୁଁ ପାରିବ ନାହିଁ କି ? ଏହା କହି ଅନାଇଲେ ତ୍ରିକୂଟର ବ୍ୟବସ୍ଥା ଗୁଡ଼ାକ ବର୍ଣ୍ଣନାକରି ବସିଲେ ଋଷିବେଦ ଶେଷ ହୋଇଗଲା ତ୍ରିକୂଟର ଗୁଣ କାନ୍ତ ଶେଷ ହୋଇ ପାରିଲା ନାହିଁ ତେଣୁ ଚଉବଦନ

ନ ପାଇଣ ଅନ୍ତ ନାମ ସେ ଅନନ୍ତ ଦେଇଣ ଭୁଜ ହୋଇଲେ ସେହି । ତାହାଙ୍କ ପରେଣର କରିଣ ଉଚ୍ଚାର ନାରଦ ଅଇଲେ ସାନୋବାଇ । ଦେଖି ନୃତ୍ୟ କଲେ । ବର୍ଣ୍ଣି ଶେଷ କରି ନ ପାରିଲେ । ଏହି ପରକାରେ ସର୍ବ ସୁର ସୁ ର ବର୍ଣ୍ଣି ଭ୍ରମିଗଲେ ମଣ୍ଡଳେ । ୬ ।

ସିଦ୍ଧଋଷିଗଣ ଖୋଜିଣ ନର୍ଜନ ସ୍ଥାନେ ଦେଇ ମନ ଭାବ ଭାବ । କଲେ ସ୍ମରଣ ନ ପାଇଲେ ତାହା ଦେଖି ଛବ ଗଲା ହୃଦ ଦୃଢ଼ । ତାହାଙ୍କୁ

---

କରିବେ ଚକ୍ରୁଗାନନ ବସ୍ତ୍ରପୁରେ ଚିନ୍ତା କରି ବସିଲେ ତାହାଙ୍କ ଭାବ କହିଲେ ଯେ ଅନ୍ତ ମୁଁ ନ ପାଇଲି ଅଦ୍ୟ ପାଇବାକୁ ସମର୍ଥ ନୁଏ ତାହାଙ୍କ ଅନନ୍ତନାମକୁ ଦେଇ ଭୁଜ ହୋଇ ରହିଲେ ତାଙ୍କପରେ ନାରଦ ମହାମହା ରାଗରାଗିଣୀ ସ୍ୱର ବୀଣାନାଦ ସହିତ ଆସିଲେ ବୋଇଲେ ପିତା ଯେ ପାରିଲେ ନାହିଁ ମୁଁ କ ପାରିବି ଏହା କହି ବୈକୁଣ୍ଠ ଶିଖରକୁ ଅନାଇଁ ଦେଲେ ଶ୍ରୀହରିଙ୍କର ନାମରେ ବର୍ଣ୍ଣନା କରୁଛନ୍ତି ଶେଷ କେତେବେଳେ କର ପାରିଲେ ନାହିଁ ତେଣୁ ଏହିପରି ଯେତେକ ସୁରପୁର ଅଦ୍ୟ ଚତୁର୍ଦ୍ଦଶ ପୁର ଅଛି ସମସ୍ତେ ବର୍ଣ୍ଣନା କରି ଭ୍ରମି ମଣ୍ଡଳହାରେ ଗଲେଣି, ଯାଉଛନ୍ତି, ଯିବାକୁ ଅଛି, ଆଉ ଦେଖନ୍ତୁ ।

ଭ୍ରାତମାନେ ତଣନାଦ ଅମ୍ଭ ଚିନ୍ତା ପୂର୍ବକ ସେହି ବୈକୁଣ୍ଠ ତତ୍ତ୍ୱଦର୍ଶୀ ହେବାକୁ ମହା ଅରଣ୍ୟରେ ଏକାନ୍ତ ଚିତ୍ତରେ ବସିଲେ କିନ୍ତୁ ନ ପାଇ ଋଷି ଜନ ହେଲା ବୋଲି ଶ୍ରୀପିତାମ୍ବର ନାମ ଦେଇ କରିଛି ଭଜିଲେ ବସ୍ତ୍ରପୁରେ ଥାଇ ଏ ପ୍ରକାର ଯେଉଁ ସ୍ଥଳ ମୁଁ କବୋଧରେ ବର୍ଣ୍ଣି ପାରେ ତ କିନ୍ତୁ କତ୍ତ ଅଂଶ ମୋର କହିବାର ଅଛି ତାହା କହିବାକୁ ଉତ୍ସାହିତରେ ଠିଆ ହୁଏଁ । ଆପଣମାନେ ସଦୟପୂର୍ବକ ଶୁଣିବା ହେଉନ୍ତୁ ଅହୋ ଏହି ଅତନ ଭୁବନରେ ଦର୍ବ୍ୟ ଘଟ ପାଇ ହେଉଁ ପର ବସ୍ତୁର ଘଟାଇଲେ ଜନଯାତ୍ରା ସୌନ୍ଦର୍ଯ୍ୟ ପ୍ରକାଶିତ ହେବ ତାହା ସବୁ କହୁ-

